# ଚନ୍ଦ୍ରମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

---

ଏହି ସଂଖ୍ୟାର 'ଭାରତ କାହାଣୀ' ଶୀର୍ଷ କଥାରେ ପରିବେଷିତ ହୋଇଛି କୃଷ୍ଣାକୁମାରୀଙ୍କ କରୁଣ କାହାଣୀ। ଏକ ଦିଗରେ ଦୁଇ ରାଜାଙ୍କର ଅହମିକା ଓ ଅନ୍ୟ ଦିଗରେ ନିଜ ବଂଶର ଗାରିମା ତଥା ରାଜ୍ୟର ସ୍ୱାର୍ଥ—ଏ ଉଭୟ ଦିଗ ଭିତରେ ଦହଗଞ୍ଜ ହୋଇ ପ୍ରାଣବଳି ଦେଲେ ଏହି ନିରୀହା ରାଜକୁମାରୀ !

## ଅମରବାଣୀ

ନ ତତ୍ ଶାସ୍ତ୍ରୈଃ ନାଗେନ୍ଦ୍ରୈଃ ନ ହୟୈଃ ନ ପଦାତିଭିଃ ।
କାର୍ଯ୍ୟଂ ସଂସିଦ୍ଧି ମାପ୍ନୋତି, ଯଦ୍ ବୁଦ୍ଧ୍ୟା ତୁ ପ୍ରସାଧିତମ୍ ॥

[ଅସ୍ତ୍ରଶସ୍ତ୍ର, ହାତୀ ଘୋଡ଼ା ବା ସୈନ୍ୟବାହିନୀ ଦ୍ୱାରା ଯେଉଁ କାର୍ଯ୍ୟ ସଫଳ ହୋଇ ନ ପାରେ, ତାହା ବୁଦ୍ଧି ଦ୍ୱାରା ହୋଇ ପାରେ ।]

---

ବର୍ଷ : ୧୨ ମେ ୧୯୮୪ ଅଙ୍କ : ୧୧

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



## ଜହ୍ନମାମୁଁ ସମ୍ବାଦ



### କଥାକୁହା ହାତୀ

ରୁଷିଆର କାସଗାନ୍ଧା ଚିଡ଼ିଆଖାନାରେ ଅଛି ଏକ ଅଦ୍ଭୁତ ହାତୀ । ସେ ତା' ନିଜ ନାମ "ବାତିର୍" ଉଚ୍ଚାରଣ କରିପାରେ; ଆହୁରି ବି କହିପାରେ "ଭଲ ପିଲଟିଏ" । ଯିଏ ଯା'ଣ କହୁଛି ତାର ଅର୍ଥ ଯେ ସେ ବୁଝୁଛି ତାହା ନୁହେଁ । କିନ୍ତୁ ଦର୍ଶକମାନଙ୍କଠୁଁ ସେ ଏତିକି ଶିଖି ନେଇଛି । ତା'ର ଅନୁକରଣ ଶକ୍ତି ଅସାଧାରଣ ।

### ଦାନବକି ମାନବ ?

ଚୀନ୍‌ର ପର୍ବତ ବହୁଳ ହୁବେଇ ଅଞ୍ଚଳରେ ସମ୍ପ୍ରତି କେତେ-ଗୁଡ଼ିଏ ବିରାଟ ବଣମଣିଷ ଜାତୀୟ ଜୀବ ଦେଖିବାକୁ ମିଳିଛନ୍ତି । ସେମାନେ ପ୍ରତ୍ୟେକେ ପ୍ରାୟ ସାତଫୁଟ ଲମ୍ବ । ବଡ଼ ବଡ଼ ଗଛରେ ଦୋହଲି ଦୋହଲି ପତ୍ର ଓ ଫଳ ଖାଉଥାନ୍ତି ।





### ରାତିରେ ଦିନ

ଖ୍ରୀଷ୍ଟିଆନ୍ ମାର୍ଶାଲ୍ ନାମକ ଫରାସୀ ବୈଜ୍ଞାନିକ ଗୋଟାଏ ଯୋଜନା ପ୍ରସ୍ତୁତ କରିଛନ୍ତି । ସେ ଅନୁସାରେ ସେ ଚନ୍ଦ୍ରକୁ ଗୁଡ଼ାଏ ଦର୍ପଣ ପଠାଇ ଯନ୍ତ୍ର ମାନବ ସାହାଯ୍ୟରେ ସେସବୁ ଏପରି ଭାବରେ ରଖିବେ, ଯାହାଦ୍ୱାରା ସେଥିରେ ସୂର୍ଯ୍ୟକିରଣ ପ୍ରତିଫଳିତ ହୋଇ ତାହା ଆସି ଆମ ପୃଥିବୀରେ ପଡ଼ିବ । ଫଳରେ ରାତି ହେବ ଦିନ ଭଳି । ପ୍ରଥମେ ଗୋଟିଏ ଦୁଇଟି ଅଞ୍ଚଳ ଉଦ୍ଭାସିତ କରି ସେ ବ୍ୟବସ୍ଥାଟି ଗ୍ରହଣ କରିବା କଥା ଭାବୁଛନ୍ତି ।

## ଜାଣନ୍ତି କି ?

୧. ହର୍ଷବର୍ଦ୍ଧନଙ୍କ ଦରବାରରେ କବି ଥିଲେ, କିଏ ? ତାଙ୍କ ପ୍ରଣୀତ ବହିର ନାମ ?
୨. ଉନବିଂଶ ଶତାବ୍ଦୀରେ ଯଶ ଅର୍ଜିଥିଲେ କେଉଁ ଇଂରେଜ କବି-ଦମ୍ପତି ?
୩. ଉନବିଂଶ ଶତାବ୍ଦୀରେ କେଉଁ ଭଉଣୀ ଦୁଇଜଣ ଉଭୟେ ଉପନ୍ୟାସ ଲେଖିକା ହିସାବରେ ସୁନାମ ଅର୍ଜିଥିଲେ ?
୪. ଡେନ୍‌ମାର୍କର କେଉଁ ଲେଖକ ଶିଶୁ-ସାହିତ୍ୟରେ ବିଶ୍ୱବିଖ୍ୟାତ ?
୫. କେଉଁ ଇଂରେଜ କବି ନିଜ ନାମକୁ ଭିନ୍ନ ଭିନ୍ନ ବନାନରେ ଲେଖୁଥିଲେ ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ଏକରୁ ଶହେ

ମାଧବପୁରର ଜମିଦାର ରାୟ ସାହେବ ଜନାର୍ଦ୍ଦନ ମହାପାତ୍ରଙ୍କ ଘରେ ଗୋବିନ୍ଦ ନାମକ ବାଳକଟିଏ ଥାଏ । ଗୋବିନ୍ଦର ବାପା ବି ରାୟ ସାହେବଙ୍କ ଘରେ କାମ କରି ଜୀବନ ବିତାଇଥିଲା । ସେ ଥିଲା ଅତ୍ୟନ୍ତ ଭଲ ମଣିଷ । ତା' ମୃତ୍ୟୁ ପରେ ରାୟ ସାହେବ ଗୋବିନ୍ଦକୁ ବହୁତ ସ୍ନେହରେ ନିଜ ଘରେ ରଖିଥିଲେ । ତାକୁ ପାଠ ପଢ଼ିବାର ସୁଯୋଗ ବି ଦେଇଥିଲେ । କିନ୍ତୁ ପାଠରେ ତା' ମନ ଗଲା ନାହିଁ । ସେଉଠୁ ତାକୁ ରାୟ ସାହେବ ଏପରି କାମଦାମ ଦେଉଥିଲେ, ଯେଉଁଥିରେ ତାକୁ କୌଣସି ଶାରୀରିକ ଶ୍ରମ ହେବ ନାହିଁ । ସେ ଯେପରି ନିଜକୁ ପରିବାରର ଜଣେ ସଦସ୍ୟ ବୋଲି ମନେ କରିବ ।

ରାୟ ସାହେବଙ୍କ ଝିଅ ସହ ନିଶ୍ଚିନ୍ତପୁରର ଜମିଦାରଙ୍କ ପୁଅ ବାହାଘର ହେବାର ପ୍ରସ୍ତାବ ପକ୍କା ହୋଇ ଯାଇଥାଏ । ନିର୍ବନ୍ଧ ହେବାର ଦିନ ବି ସ୍ଥିର ହୋଇଥାଏ । ତେବେ କୌଣସି କାରଣରୁ ନିର୍ବନ୍ଧ ଦିନଟି ଗୁରିଦିନ ଘୁଞ୍ଚାଇ-ଦେବା ଠିକ୍ ହେବ ବୋଲି ରାୟ ସାହେବ ମନେ କଲେ ।

ସେହି ମର୍ମରେ ସେ ଖଣ୍ଡିଏ ଚିଠି ଲେଖି ଗୋବିନ୍ଦକୁ ଦେଲେ ଓ ଚିଠି ଖଣ୍ଡିକ ନିଶ୍ଚିନ୍ତପୁର ଯାଇ ତାଙ୍କ ଭାବି ସମୁଧିଙ୍କୁ ଦେଇ ଆସିବାକୁ ରାୟ ସାହେବ କହିଲେ । ଏହାପରେ ସେ ଜରୁରୀ କାମରେ ସହରକୁ ଚାଲିଗଲେ ।

"ଆରେ ଗୋବିନ୍ଦ, କ'ଣ କରୁଛୁ ? ଆ, ତାସ୍ ଖେଳିବା ।" ତାର କେଇଜଣ ସାଙ୍ଗ ତାକୁ କହିଲେ ।

"ନା, ଆଜି ନୁହେଁ ।" ଗୋବିନ୍ଦ ତାଙ୍କୁ କହିଲା ।

ଗଣେଶ



"କାହିଁକି, ଆଜି ଦିନଟା ତାସ୍ ଖେଳପାଇଁ ଅଶୁଭ ହୋଇଗଲା କାହିଁକି?" ସେମାନେ ଜେରା କଲେ।

"ଆରେ ଭାଇ, ଶୁଭ ଅଶୁଭ କଥା ନୁହେଁ। ମୋତେ ନିଶ୍ଚିନ୍ତପୁର ଯାଇ ପୁଣି ବାହୁଡ଼ି ଆସିବାକୁ ପଡ଼ିବ।" ଗୋବିନ୍ଦ ବୁଝାଇ ଦେଲା।

"ଓଃ, ଏଇ କଥା! ନିଶ୍ଚିନ୍ତପୁର କେତେ ଦୂର କି? ନଈ ପାରିହେଲେ ହେଲା। କ'ଣ ଘଡ଼ିଏ ଡେରି କରି ଗଲେ ଚଳିବ ନାହିଁ? ଆ, ଆ। ନିଜକୁ ଏଡ଼େ କର୍ମବ୍ୟସ୍ତ ବୋଲି ଆମ ଆଗରେ ଦେଖାଇ ହେବା ଦରକାର ନାହିଁ।" ବନ୍ଧୁମାନେ କହିଲେ।

ଗୋବିନ୍ଦ ଉପରଓଳି ନିଶ୍ଚିନ୍ତପୁର ଯିବ ବୋଲି ଠିକ୍ କରି ତା' ସାଙ୍ଗମାନଙ୍କ ସାଙ୍ଗରେ ତା' ନିଜ ଘର ପିଣ୍ଡାରେ ତାସ୍ ଖେଳିବାକୁ ବସିଗଲା। ଖେଳୁଁ ଖେଳୁଁ କେତେବେଳେ ବେଳ ଗଡ଼ିଗଲାଣି, ତା'ର ହୋସ୍ ନଥାଏ। ଯେତେବେଳେ ହୋସ୍ ହେଲା, ସେତେବେଳକୁ ବେଳ ଉତରିଛି। ସେ ଏତେ ବାଟ ଯିବ କେମିତି? ଏଇ ଚିନ୍ତା କରୁଥାଏ, ସେତିକି-ବେଳେ ଜମିଦାରଙ୍କର ବୁଢ଼ା ଗୁଜର ସେ ବାଟେ ଯାଉଁ ଯାଉଁ ତାକୁ ପଚାରିଲା, "କହୋ, ଚିନ୍ତାମଗ୍ନ ହୋଇ ବସିଛ କ'ଣ?"

ଗୋବିନ୍ଦ ତାକୁ ସବୁ କହିଲା। "ଏଇ କଥା! କାଲି ଯାଇ ଚିଠି ଦେଇଦେବ! ଆଜି ରାତିରେ ଫେରି ଯଦି ରାୟ ସାହେବ ପଚାରିବେ, ତେବେ କହିବ ଚିଠି ଦେଇ ଆସିଛ। ଆଗାମୀ କାଲି ଦେହ ଖରାପ ଅଛି ବୋଲି ଖବର ଦେଇ କାମକୁ ଆସିବ ନାହିଁ, ନିଶ୍ଚିନ୍ତପୁର ଯିବ!"

ଗୋବିନ୍ଦକୁ ଏ ପରାମର୍ଶ ବେଶ୍ ଭଲ ଲାଗିଲା। ସେ ପୁଣି ଖେଳରେ ମନ ଦେଲା।

ରାତି ପହରେ ସଭିକ ରାୟ ସାହେବ ସହରରୁ ଫେରି ଆସି ଗୋବିନ୍ଦକୁ ଡକାଇ ପଠାଇ ପଚାରିଲେ, "କ'ଣ ହେଲା?"

"ନିଶ୍ଚିନ୍ତପୁର ଯାଇ ଚିଠି ଦେଇ ଆସିଲି, ଆଜ୍ଞା!"

"କାହାକୁ ଚିଠି ଦେଲି?" ରାୟ ସାହେବ ପଚାରିଲେ।



"ଖୋଦ୍ ଜମିଦାରଙ୍କୁ ଆଜ୍ଞା!"

ରାୟ ସାହେବ ଏ ଉତ୍ତର ଶୁଣି ଟିକଏ ଆଶ୍ଚର୍ଯ୍ୟ ହୋଇ ଗୋବିନ୍ଦ ଆଡ଼େ ଅନାଇ ପଚାରିଲେ, "କହ, ତୁ ଗଲୁ କେମିତି? ନଈରେ ତ ବଢ଼ି ଆସିଛି!"

"ମୁଁ ପହଁରି ନଈ ପାରହୋଇ ଗଲି, ଆଜ୍ଞା।"

"ଆଚ୍ଛା, ଏପରି କଥା! ଜମିଦାର ଚିଠି ପଢ଼ି କହିଲେ କ'ଣ?"

"କହିଲେ ଠିକ୍ ଅଛି।"

"ଆଚ୍ଛା, ତାଙ୍କ ଦାଣ୍ଡରେ ତାଙ୍କ ହାତୀକୁ ଦେଖିଲୁଟି? ତା'ର ବେମାର ହୋଇଥିଲା। ଉଠି ଠିଆ ହୋଇ ପାରିଲାଣି?" ରାୟ ସାହେବ ପଚାରିଲେ।

ଟିକଏ ଥତମତ କରି ଗୋବିନ୍ଦ ଉତ୍ତର ଦେଲା, "ହଁ ଆଜ୍ଞା, ଠିଆ ହୋଇଥିଲା ତ!"

"ହଁ! ତୋତେ ତ ଜମିଦାର ଘର ଖାଇବାକୁ ପିଇବାକୁ ଦେଇଥିବେ, ନା ନାହିଁ!"

"ହଁ ଆଜ୍ଞା, ତା' ଦେବେ ନାହିଁ? ବହୁତ ଗୁଡ଼ାଏ ଖୁଆଇଲେ।"

"କ'ଣ ବହୁତ?"

"ପୁରି, ତରକାରି, ଭଜା, ରସଗୋଲ୍ଲା, ଦହି, ଏମିତି ସବୁ କେତେ କ'ଣ।"

"ବେଶ୍, ତୁ ପେଟ ପୂରାଇ ଖାଇଛୁ ତ?"

"ହଁ ଆଜ୍ଞା।"

"ତା'ହେଲେ ରାତିରେ କିଛି ଖାଇବୁ ନାହିଁ; ପେଟ ଖରାପ ହେବ। ବୁଝିଲୁ?"

"ହଁ ଆଜ୍ଞା, ରାତିରେ କିଛି ଖାଇବା ଭଳି ଅବସ୍ଥା ନାହିଁ।" ଗୋବିନ୍ଦ ବିକଳ ଭାବରେ କହିଲା। ସେତେବେଳକୁ ସେ କେମିତି ରାୟ ସାହେବଙ୍କ କବଳରୁ ଖସିବ, ସେଥି ପାଇଁ ଉଚ୍ଛନ୍ନ ହେଉଥାଏ। ସେତେବେଳକୁ ତା' କଣ୍ଠ ଶୁଖି ଆସିଲାଣି।

ତାକୁ ଭୀଷଣ ଡର ଲାଗୁଥାଏ। ଜମିଦାରଙ୍କ କଣ୍ଠସ୍ୱର ଓ ଗୃହାଣୀ ଯେପରି ସବୁଦିନ ପରି ନୁହେଁ।

"ମୁଁ ଯାଉଛି, ଆଜ୍ଞା!" ସେ କୌଣସି ମତେ କହିଲା। ଜମିଦାର ଅନ୍ୟମନସ୍କ

ଥିବାପରି ମନେ ହେଲା । ସେ ତା' କଥାର ଜବାବ ଦେଲେ ନାହିଁ । ପୁଣି ତା' ଉପରେ କଡ଼ା ଦୃଷ୍ଟି ନିକ୍ଷେପ କଲେ ।

"ଗୋବିନ୍ଦ! ମୋର ସାଢ଼ୁ ସମ୍ବନ୍ଧୀଙ୍କୁ ଅଦ୍ଭୁତ ଯାଦୁ ଜଣାଅଛି କହିବାକୁ ହେବ । କାରଣ ମୋ ସହ ତାଙ୍କର ସହରରେ ଭେଟ ହୋଇଗଲା । ସେ ସକାଳେ ଘରୁ ବାହାରି ଆସିଛନ୍ତି । ବର୍ତ୍ତମାନ ଫେରିଯାଇ ପହଞ୍ଚିଥିବେ । ସେ ଏକ ସମୟରେ ସହରରେ ବି ଥିଲେ, ନିଜ ଗାଁରେ ବି ଥିଲେ । ଏହା କ'ଣ କମ୍ କଥା ?" ରାୟ ସାହେବ ଗମ୍ଭୀର ସ୍ୱରରେ କହିଲେ ।

ତାସ୍ । ଗ୍ଲାନିଆରେ ଗୋବିନ୍ଦ ଦେହରୁ ଝାଳ ବୋହିଗଲା ।

"ହାତୀ କଥା । ଜମିଦାରଙ୍କର ଘୋଡ଼ାର ଦେହ ଖରାପ ଥିଲା । ମୁଁ ଭୁଲ୍‌ରେ ହାତୀ ବୋଲି କହିଲି । ତୁ କିନ୍ତୁ ତାଙ୍କ ଦୁଆରେ ହାତୀ ଦେଖି ପକାଇଲୁ ।"

ଗୋବିନ୍ଦ କାନ୍ଦି ପକାଇଲା ।

"କାନ୍ଦିବା ଦରକାର ନାହିଁ । ଖାଲି ଏତିକି ବୁଝ, ଗୋଟାଏ ମିଛ କହିଲେ ଶହେ ମିଛ କହିବାକୁ ପଡ଼େ । ତୋର ହେଳା ନ କରି ସେଠାକୁ ଶୀଘ୍ର ଯିବା ଉଚିତ ଥିଲା । ଯଦି ନଗଲୁ ସେକଥା ମୋତେ କହି ପାରିଥାନ୍ତୁ । କିନ୍ତୁ ତୋତେ କ'ଣ କେବେ ମୁଁ ଗାଳି-ଗୁଲଜ କରିଛି ଯେ ତୁ ଏତେ ଗୁଡ଼ାଏ ମିଛ କହିଲୁ ?" ରାୟ ସାହେବ ଧୀର ସ୍ୱରରେ ପଚାରିଲେ ।

"ବାବୁ, ଆଉ ଜୀବନରେ ଏପରି କରିବି ନାହିଁ । ମୁଁ ଅନ୍ୟର ବୁଦ୍ଧିରେ ଏପରି କହିଲି ।"

"ଜାଣେ । ଅନ୍ୟଠୁଁ ବୁଦ୍ଧି ଶିଖିବା ଭଲ, କିନ୍ତୁ ତାହା ଯଦି ସଦ୍‌ବୁଦ୍ଧି ହୋଇଥିବ । ମନ୍ଦବୁଦ୍ଧି ଶିଖିବୁ ନାହିଁ, ହଉ ଏଥର ଯା । ଖାଇବୁ । ତାସ୍ ଖେଳରେ ମାଛ ଦିନରେ ଖାଇଛୁ କି ନା ସନ୍ଦେହ ।" ରାୟ ସାହେବ ଏଥର ହସିଲେ ।






[୧୧]

[ ଦୁଇ ବଡ଼ ଭାଇ ମା'ଙ୍କୁ କେତେ କଲବଲ କରିଛନ୍ତି, ସେକଥା ପିଙ୍ଗଳ ବୁଝିବା ସତ୍ତ୍ୱେ ଭାଇମାନଙ୍କ ଅବସ୍ଥା ଦେଖି ସେମାନଙ୍କୁ ସ୍ୱାଗତ କଲା । କିନ୍ତୁ ପିଙ୍ଗଳ ଆଣିଥିବା ଧନଦୌଲତ ଓ ଯାଦୁଥଳି କିପରି ହସ୍ତଗତ କରିବେ, ତାହାହିଁ ହେଲା ସେ ଦୁଇ ଭାଇଙ୍କର ଚିନ୍ତା । ସେଥିପାଇଁ ସେମାନେ ଯାଇ ଗୋଟିଏ ଜାହାଜର କପ୍ତାନ୍ ପାଖରେ ପହଞ୍ଚିଲେ । ତା'ପରେ··· ]

ନିଜ ସାନଭାଇ ବିଷୟରେ ଜୀବଦତ୍ତ ଜାହାଜର କପ୍ତାନ୍‌ଙ୍କୁ ଯାହା କହିଲା, ତାହା ଶୁଣି ସେ ଠୋ ଠୋ ହସିଲେ । ତାଙ୍କୁ ସେପରି ହସିବାର ଦେଖି ଦୁଇଭାଇଙ୍କ ମୁହଁ ଶେତା ପଡ଼ିଗଲା । କପ୍ତାନ୍ ସେମାନଙ୍କ ମତଲବ୍ ବୁଝି ପକାଇଲେ କି ? କପ୍ତାନ୍ ଅଳ୍ପ ସମୟ ନୀରବ ରହି ହଠାତ୍ ଗମ୍ଭୀର କଣ୍ଠରେ ପଚାରିଲେ, "ବାବୁ, ସତ କୁହ । ତମ ସାନଭାଇ ପିଙ୍ଗଳ କ'ଣ ସତରେ ତମମାନଙ୍କୁ ଓ ତମ ମାଙ୍କୁ ଦହଗଞ୍ଜ କରୁଛି ? ମିଛ କଥା ଶୁଣିବାକୁ ମୋତେ ଭଲ ଲାଗେ ନାହିଁ । ବୁଝିଲ ?"

ଲକ୍ଷଦତ୍ତ ଉତ୍ତର ଦେଲା, "କପ୍ତାନ୍ ସାହେବ, ମୋ ବଡ଼ଭାଇ ଆମ ସାନଭାଇ



ପିଙ୍ଗଳ ବିଷୟରେ ଯାହା କହିଲେ, ସେଥିରେ ତିଳେ ବି ମିଛ ନାହିଁ । କଥାକେ କଥାକେ ସେ ଆମକୁ ପିଟେ । ଆମ ମା ବୁଢ଼ୀକୁ ମନଇଚ୍ଛା ଗାଳିଗୁଲଜ କରେ । ଆଉ କେତେ ସହିବୁଁ ? ଆପଣ ଆମକୁ ଏଥିରୁ ରକ୍ଷା କରନ୍ତୁ । ତା' ଯୋଗୁଁ ଆମେ କେଡ଼େ ହଇରାଣ ହରକତ ହେଲୁଣି ସେକଥା ଆଉ କ'ଣ କହିବୁଁ !"

କପ୍ତାନ୍ ଦୁଇଭାଇଙ୍କୁ କିଛି ସମୟ ନିରୀକ୍ଷଣ କରି କହିଲେ, "ବେଶ୍, ବେଶ୍ ! ତମ ଭାଇର ଅତ୍ୟାଚାରରୁ ତମମାନଙ୍କୁ ଓ ତମ ମା'ଙ୍କୁ ରକ୍ଷା କରିବାକୁ ମୋର ଆପତ୍ତି ନାହିଁ । ତାକୁ ମୁଁ ମୋ ଜାହାଜରେ ଖଲାସୀ କାମରେ ରଖିବି । ଦୁଇ ତିନି ବର୍ଷ ପରେ, ତା' ସ୍ୱଭାବ ବଦଳିଗଲେ, ତାକୁ ଫେରାଇ ନେଇ ଆସିବି । ଠିକ୍ ହେବଟି ?"

ଦୁଇ ଭାଇ ପରସ୍ପର ଚହାଁଚହିଁ ଓ ଆଖି ଠାରଠାରି ହେଲେ । କପ୍ତାନ୍ ଯେ ଏଥର ସେମାନଙ୍କ କଥା ବିଶ୍ୱାସ କରିନେଲେଣି, ଏଥିପାଇଁ ସେମାନଙ୍କ ମନ ଖୁସି ହୋଇ ଯାଇଥାଏ ।

"କ'ଣ, ବର୍ଷେ ଦୁଇବର୍ଷ ବେଶି ସମୟ ଭଲ ଲାଗୁଛି ? କିନ୍ତୁ ତା' ପୂର୍ବରୁ ତାକୁ ଫେରାଇ ଦେବି କିପରି ? ଜାହାଜ ପୁଣି ଥରେ ଏ ବନ୍ଦରକୁ ଆସିବା ଯାଏ ତ ଅପେକ୍ଷା କରିବାକୁ ହେବ ।" କପ୍ତାନ କହିଲେ ।

"ନା, ନା, ଆଜ୍ଞା, ତାକୁ ପୁଣି ଫେରାଇ ନେଇ ଆସିବା କଥା କହନ୍ତୁ ନାହିଁ । ସିଏ ଜନ୍ମରୁ ଏଡ଼େ ଦୁଷ୍ଟ ଯେ ପୁଣି ଥରେ ଯଦି ସେ ଆମକୁ ଭେଟିବ ତେବେ ଆମ ଦଫା ରଫା କରି ଛାଡ଼ିବ । ଆମେ ତାକୁ ବହୁତ ସ୍ନେହ କରୁଁ ଠିକ୍, ତଥାପି ଆମେ ତାକୁ ତ୍ୟାଗ କଲୁଁ । ଆପଣଙ୍କୁ ଆମର ନିବେଦନ, ତାକୁ ଆଜୀବନ ଆପଣଙ୍କ ପାଖରେ ରଖିବେ ।" ଜୀବଦତ୍ତ ଅତ୍ୟନ୍ତ କାକୁସ୍ଥ ଭାବ ଦେଖାଇ କହିଲା ।

"ସେପରି କରିବାକୁ ହେଲେ ତାକୁ ମୋତେ ଗୁଲାମ୍ ରୂପେ କିଣିନେବାକୁ ପଡ଼ିବ । ତମ ମା ସେଥିରେ ରାଜି ହେବେ ? ପୁଣି ପରେ ତମେମାନେ ଯାଇ ଯଦି ସୁଲ୍ତାନ୍‌ଙ୍କ

ପାଖରେ ଫେରାଦ ହେବ, ତେବେ ମୋତେ ବହୁତ ଅଡୁଆରେ ପଡ଼ିବାକୁ ହେବ । ଭାବ-ଚନ୍ତ୍ର ଦେଖ ।" କପ୍ତାନ୍ କହିଲେ ।

ଜୀବଦତ୍ତ ଓ ଲକ୍ଷଦତ୍ତ କେଇପାଦ ଦୂରକୁ ଯାଇ ନିଜ ନିଜ ଭିତରେ ଯେପରି ଅତ୍ୟନ୍ତ ଗୁରୁତର ଆଲୋଚନା କରୁଛନ୍ତି, ସେହି ଭାବ ଦେଖାଇଲେ । ତା'ପରେ କପ୍ତାନ ପାଖକୁ ଆସି କହିଲେ, "ଆମେ ଭାବଚନ୍ତ୍ର ଦେଖିଲୁଁ, ଆପଣଙ୍କ ପ୍ରସ୍ତାବରେ ରାଜି ହେବା ଛଡ଼ା ଅନ୍ୟ ଉପାୟ ନାହିଁ । କାରଣ ମା କହିଛନ୍ତି, ପିଙ୍ଗଳକୁ ସବୁଦିନ ପାଇଁ ଦୂରେଇ ନଦେଲେ ତାଙ୍କର ବା ଆମର ଜୀବନ ମୋଟେ ନିରାପଦ ନୁହେଁ । ତେଣୁ ଆପଣ ଯାହା ଉତ୍ତମ ତାହାହିଁ କରନ୍ତୁ । ପିଙ୍ଗଳକୁ ଗୁଲାମ ହିସାବରେ ଆମ ପାଖରୁ କିଣି ନିଅନ୍ତୁ ।"



"ଆଚ୍ଛା । ସେଇଆ କରିବା । ସନ୍ଧ୍ୟା-ବେଳକୁ କୌଣସି ଆଳରେ ତମ ଭାଇକୁ ଏଠିକି ନେଇ ଆସ । ତା'ପରେ ଯାହା କରିବାର ଆମେ କରିବୁଁ । ନିଅ । ଦାମ ନିଅ । ଆମେ ଗୁଲାମ୍ କିଣିବା ପାଇଁ ଏତିକି ଦେଇଥାଉଁ । ଶହେ ଅସର୍ଫି ।"

କିନ୍ତୁ ସଙ୍ଗେ ସଙ୍ଗେ ମୂଲ୍ୟ ଗ୍ରହଣ ନକରି ଜୀବଦତ୍ତ କହିଲା, "କପ୍ତାନ୍ ସାହେବ୍, ଆମେ ପିଙ୍ଗଳକୁ ଏ ସ୍ଥାନକୁ ନେଇ ଆସିବା ଅସମ୍ଭବ । ସେ ଆମଠୁଁ ବହୁତ ଅଧିକ ଚାଲାକ୍ । ଆମ କଥା ଶୁଣିବ ନାହିଁ । ଆପଣ ନିଜେ କେମିତି ହେଲେ ତାକୁ ନେଇ ଆସିବାର ବ୍ୟବସ୍ଥା କରନ୍ତୁ ।"

କପ୍ତାନ୍ ଅଟ୍ଟହାସ୍ୟ କରି କହିଲେ, "ଯେତେ ଚାଲାକ୍ ହେଲେ ବି ମୋତେ ପାରିବ ନାହିଁ । ବାଘ ବି ଯଦି ମୋ ହାବୁଡ଼ରେ ପଡିବ, ତେବେ ତାକୁ କିପରି କାବୁ କରିବାକୁ ହେବ ମୁଁ ଜାଣେ । ଠିକ୍ ଅଛି । ଆଜି ରାତିରେ ଦୁଇଜଣ ଖଲାସୀଙ୍କୁ ଧରି ମୁଁ ତମ ଘରେ ପହଞ୍ଚିବି । ପ୍ରସ୍ତୁତ ରହିଥିବ ।"

ଘରକୁ କିପରି ଯିବାକୁ ପଡ଼ିବ ସେକଥା ଭଲ ଭାବରେ ବୁଝି ସମଝି ନେଇ କପ୍ତାନ ଦୁଇଭାଇଙ୍କୁ ଶହେ ଅସର୍ଫି ଦେଇଦେଲେ । ଦୁଇଭାଇ ଖୁସି ହୋଇ ଘରକୁ ଫେରିଲେ ।

ବାଟରେ ଲକ୍ଷଦତ୍ତ କହିଲା, "ବର୍ତ୍ତମାନ ଏପରି ଉପାୟ କରିବାକୁ ହେବ ଯେମିତି ପିଙ୍ଗଳ ଆମକୁ ମୋଟେ ସନ୍ଦେହ କରିବ ନାହିଁ । କପ୍ତାନ ଯେତେବେଳେ ତା' ଲୋକଙ୍କୁ ଧରି ପଳାଇବ, ସେତେବେଳେ ଆମେ କରିବା କ'ଣ ?"

"ଆରେ ଭାଇ, ସେ ବିଷୟରେ ଚିନ୍ତା କରନାହିଁ । ମୁଁ ଆଗରୁ ଉପାୟ ଠିକ କରି ରଖିଛି ।" ଏହା କହି ଜୀବଦତ୍ତ ଥରେ ଚାରିଆଡ଼େ ଆଖି ବୁଲାଇ ଆଣିଲା । ତା'ପରେ ସତର୍କ ହୋଇ ଲକ୍ଷଦତ୍ତ କାନରେ ଧୀର ସ୍ୱରରେ କିଛି କହିଲା ।

ଲକ୍ଷଦତ୍ତ ପାଟି କରି ହସିଲା । ଖୁସିରେ ତାଳି ମାରି କହିଲା, "ଭାଇ, ତମେ ବୁଦ୍ଧି ବଳରେ ଦେବଗୁରୁ ବୃହସ୍ପତିଙ୍କୁ ବି ଟପିଯିବ । ଏଥିରେ ମୋର ମୋଟେ ସନ୍ଦେହ ନାହିଁ । କିନ୍ତୁ ପିଙ୍ଗଳର ସମ୍ପତ୍ତି ବାଣ୍ଟିବା ବେଳେ ମୋ ସହ ଅନ୍ୟାୟ କରିବ ନାହିଁ ତ ?"

"ତୁ କହୁଛୁ କ'ଣ ? ମୁଁ ପୁଣି ତୋ ସହ ଅନ୍ୟାୟ କରିବି ? ଏହା କେବେ ସମ୍ଭବ ? ନିଜ ଭାଇ ସହ କେହି ଚାଲ୍ ଖେଳେ ? କେବେ ମୁଁ ତୋତେ ଦଗା ଦେଇଛି ?" ଜୀବଦତ୍ତ କହିଲା ।

ଦୁହେଁ ଯେ ଆଉ ଗୋଟିଏ ଭାଇକୁ ଦଗା ଦେବାକୁ ପ୍ରସ୍ତୁତ ହେଉଥିଲେ, ସେକଥା କାହାରି ମନକୁ ଆସିଲା ନାହିଁ ।

ହସ ଖୁସିରେ ଦୁହେଁ ଘରକୁ ଫେରିଲେ । ତେବେ ଦୂରରୁ ପିଙ୍ଗଳକୁ ଦେଖିବା ମାତ୍ରେ ଦୁହେଁ ଖୁବ୍ ଚିନ୍ତିତ ଥିବାର ଅଭିନୟ କଲେ ।



ଭାଇମାନଙ୍କୁ ସେଭଳି ଉଦାସ ଦେଖି ପିଙ୍ଗଳ ପଚାରିଲା, "କଣ ହେଲା ? ଦୁହେଁ ଏପରି ଉଦାସ ଦେଖାଯିବାର କାରଣ କ'ଣ ?"

ଜୀବଦତ୍ତ ଦୋଦୋପାଞ୍ଚ ହୋଇ କହିଲା, "ଭାଇ ପିଙ୍ଗଳ, ଆମେ ଉଦାସ ହେବାର ପ୍ରକୃତରେ ସେପରି କିଛି କାରଣ ନାହିଁ। କଥା କ'ଣ କି, ଆଜି ବାଟରେ ଜଣେ ପୁରୁଣା ଦୋସ୍ତ୍ ସହ ଦେଖା ହୋଇଗଲା। ସେ ଗୋଟିଏ ଜାହାଜର କପ୍ତାନ୍। ଆଗରୁ କେତେଥର ସିଏ ଆମର ଅଭ୍ୟର୍ଥନା କରିଛି, ଆମେ ବି ତା'ର ଅଭ୍ୟର୍ଥନା କରିଛୁଁ। କିନ୍ତୁ ଆଜି ତ ଆମେ ଦୁହେଁ ନିଃସ୍ୱ। ତାର ପରିଚର୍ଯ୍ୟା କରିବୁଁ କେମିତି ? ତାହାହିଁ ଚିନ୍ତା।"

"ଭାଇ, ତମର ସିଏ ଦୋସ୍ତ୍, ସିଏ କ'ଣ ମୋର ଦୋସ୍ତ୍ ନୁହେଁ ? ଆମେ କ'ଣ ଆଉ ନିଃସ୍ୱ ହୋଇ ରହିଛୁଁ ? ଇଚ୍ଛା କଲେ ଆମେ କ'ଣ ପୁରା ଅବନ୍ତୀ ନଗରର ସବୁ ଲୋକଙ୍କୁ ସବୁଦିନ ଖାଇବାକୁ ଦେଇ-ପାରିବୁ ନାହିଁ ? ତମେ ତାଙ୍କୁ ନିମନ୍ତ୍ରଣ କର। ଆଜି ରାତିରେ ସେମାନେ ଏଠି ଖିଆପିଆ କରନ୍ତୁ।"

"ପିଙ୍ଗଳ ! ତୁ ଆମ ସମ୍ମାନ ରଖିଦେଲୁ। ତୋ କଥା ଆମକୁ ଅମୃତ ଭଳି ଲାଗୁଛି।" ଜୀବଦତ୍ତ ଓ ଲକ୍ଷଦତ୍ତ କହିଲେ।

"ହଁ, ସତ କହୁଛି। ତାଙ୍କୁ ଡାକି ଆଣ। ତାଙ୍କୁ ବଢ଼ିଆ ଖାନା ଖୁଆଇବା।" ପିଙ୍ଗଳ ଉତ୍ସାହ ଦେଇ କହିଲା।






"ତା'ହେଲେ ଆମେ ବର୍ତ୍ତମାନ ଯାଇ ତାଙ୍କୁ କହିଦେଇ ଆସିବା ଠିକ୍ ହେବ।" ଜୀବଦତ୍ତ ଓ ଲକ୍ଷଦତ୍ତ ଏତିକି କହି ପୁଣି ସହର ଆଡ଼େ ମୁହାଁଇଲେ।

ଦିନଯାକ ଜୁଆ ଆଡ୍ଡା ଓ ସରାବ ଖାନାରେ ବିତାଇ ଦୁହେଁ ସନ୍ଧ୍ୟା ବେଳକୁ ଯାଇ ସେ କପ୍ତାନ ପାଖରେ ପହଞ୍ଚିଲେ ଓ ଏଥର ଘରକୁ ଆସିବାକୁ ଡାକିଲେ। କପ୍ତାନ ଦୁଇଜଣ ବଳୁଆ ନାବିକ ସାଙ୍ଗରେ ଧରି ଦୁଇଭାଇଙ୍କ ସହ ଚାଲିଲା।

ସେମାନଙ୍କୁ ଦେଖି ପିଙ୍ଗଳ ଘରୁ ବାହାରି ଆସି ନମସ୍କାର କଲା ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ କଥାବାର୍ତ୍ତା କରି ଘରକୁ ସ୍ୱାଗତ କଲା। ସେମାନେ ଆସନ ଗ୍ରହଣ କରିବା ଭିତରୁ ପିଙ୍ଗଳ ଓ ମା ସେ ଯାଦୁ ଥାଳରୁ ନାନା ପ୍ରକାର ସୁଖାଦ୍ୟ ପାନୀୟ ଆଦାୟ କରି ସେମାନଙ୍କୁ ପରଶିଲେ। କପ୍ତାନ ଯାଦୁ ଥାଳ ବିଷୟରେ ତ କିଛି ଜାଣି ନଥିଲେ। ତେଣୁ ସେ ଭାବିଲେ କି ଜୀବଦତ୍ତ ଓ ଲକ୍ଷଦତ୍ତ ବହୁତ ପଇସାପତ୍ର ଖର୍ଚ୍ଚ କରି ସେମାନଙ୍କ ସକାଶେ ଏସବୁ ଖାଦ୍ୟଦ୍ରବ୍ୟ ଯୋଗାଡ଼ କରିଛନ୍ତି।

ଖିଆପିଆ ପରେ କପ୍ତାନ ତା'ର ସମୁଦ୍ର-ଯାତ୍ରାର ନାନା ଅଭିଜ୍ଞତା ବର୍ଣ୍ଣନା କରିବାକୁ ଲାଗିଲେ। ଜୀବଦତ୍ତ ଓ ଲକ୍ଷଦତ୍ତ ତାଙ୍କୁ ବାରମ୍ବାର ପ୍ରଶ୍ନ କରୁଥାନ୍ତି। କପ୍ତାନ ଉତ୍ତର ଦେଉଥାନ୍ତି। ପିଙ୍ଗଳ ସରଳ ମନରେ ମୁଗ୍ଧ ହୋଇ କପ୍ତାନ୍ଙ୍କ ଗପ ଶୁଣୁଥାଏ।

କପ୍ତାନ ଭାବିଥିଲେ ପିଙ୍ଗଳ ବେଶି ରାତିରେ ଟିକିଏ ଢୁଳେଇ ପଡ଼ିଲେ ତାକୁ କାବୁ କରିନେବେ। କିନ୍ତୁ ଗପ ଶୁଣିବାର ଉତ୍ସାହରେ ପିଙ୍ଗଳ ଆଖିକୁ ନିଦ ଆସିଲା ନାହିଁ।

କପ୍ତାନ ଭାବିଲେ, ଏମିତି ଯଦି ସାରା ରାତି ପାହିଯିବ, ତେବେ ପିଙ୍ଗଳକୁ ଜାହାଜକୁ ନେବା ଅସୁବିଧାଜନକ ହେବ। ଭୋର୍ ହୋଇଗଲେ ରାସ୍ତାଘାଟରେ ଲୋକ ଚଳାଚଳ ଆରମ୍ଭ ହୋଇଯିବ। ପିଙ୍ଗଳ ଛିଟି ପିଟି ହେଲେ ତା' ଉପରେ ସମସ୍ତଙ୍କ ଆଖି ପଡ଼ିବ। ଫଳରେ ନାନା ବିଭ୍ରାଟ ଦେଖାଦେବ।

ଅଧରାତ୍ର ବେଳକୁ କପ୍ତାନ୍ ଇଶାରା ଦେଲେ । ସଙ୍ଗେ ସଙ୍ଗେ ତାଙ୍କ ସାଙ୍ଗରେ ଆସିଥିବା ଦୁଇ ନାବିକ ପିଙ୍ଗଳ ଉପରକୁ ଲଂଫ ଦେଲେ । ଜୀବଦତ୍ତ ଓ ଲକ୍ଷଦତ୍ତ ପିଙ୍ଗଳ ମୁହଁରେ ଲୁଗା ଗେଞ୍ଜି ଦେବା ଫଳରେ ସେ ପାଟି କରି ପାରିଲା ନାହିଁ । ଅନ୍ୟମାନେ ତା' ଗୋଡ଼ ହାତ ବାନ୍ଧି ପକାଇଲେ ।

ପ୍ରଥମେ ପିଙ୍ଗଳ କିଛି ବୁଝି ପାରିଲା ନାହିଁ । ତା'ପରେ ସେ ମୁକ୍ତ ହେବାକୁ ଚେଷ୍ଟା କଲା । କିନ୍ତୁ ପାଞ୍ଚଜଣ ବିରୁଦ୍ଧରେ ସେ ଏକା ବା କ'ଣ କରିବ ? ସେଇଠୁ ସେ ଭଲ୍ଲୁକକେତୁଙ୍କୁ ସ୍ମରଣ କଲା । କିନ୍ତୁ ଦୁର୍ଭାଗ୍ୟକୁ ଯେଉଁ ମନ୍ତ୍ର ପଢ଼ିଲେ ଭଲ୍ଲୁକକେତୁ ଆସିବା କଥା, ସେ ମନ୍ତ୍ରଟି କୌଣସି ମତେ ତା'ର ମନେ ପଡ଼ିଲା ନାହିଁ । ତେଣୁ ସେ ଅସହାୟ ଭାବରେ ପଡ଼ି ରହିଲା ।

ମା ବୁଢ଼ୀ ସେତେବେଳକୁ ପାଖ କୋଠରୀରେ ଶୋଇ ପଡ଼ିଥାନ୍ତି । ସେ ଏସବୁ ଘଟଣା ବିଷୟରେ କିଛି ଜାଣିପାରିଲେ ନାହିଁ ।

ଜଣେ ବଳବାନ୍ ନାବିକ ପିଙ୍ଗଳକୁ କାନ୍ଧରେ ପକାଇ ଚାଲିଲା । ଅନ୍ୟମାନେ ତା'କୁ ଘେରି ରହି ବାଟ ଚାଲିଲେ । ଅଳ୍ପ ସମୟ ଭିତରେ ସେମାନେ ଜାହାଜ ପାଖରେ ଯାଇ ପହଞ୍ଚିଗଲେ । ଜୀବଦତ୍ତ ଓ ଲକ୍ଷଦତ୍ତ କପ୍ତାନ୍‌କୁ କହିଲେ, "ମହାଶୟ, ମନେ ରଖିବେ, ଏ ଟୋକା ଯେମିତି କପ୍ଲିନ୍ କାଳେ ପଳାଇ ଆସି ନପାରେ !"




"ମୋ କବଳରୁ ଖସି ଆସିବ, ଏପରି ବାପର ପୁଅ କେହି ଜନ୍ମ ହୋଇ ନାହିଁ !" କପ୍ତାନ ସଗର୍ବେ କହିଲା ।

"ଜାହାଜ ଶୀଘ୍ର କୂଳ ଛାଡ଼ିବ ତ ? ନହେଲେ ଇଏ ପଳେଇ ଆସିବ ।" ଜୀବଦତ୍ତ ଆଶଙ୍କା ପ୍ରକାଶ କଲା ।

"ବର୍ତ୍ତମାନ ଲୁହା ଜଂଜିରରେ ବନ୍ଧା ହେବ । ପଳେଇ ଆସିବ କିପରି ?" କପ୍ତାନ କହିଲେ ।

ଦୁଇଭାଇ କପ୍ତାନଙ୍କୁ ଧନ୍ୟବାଦ ଦେଇ ଘରକୁ ଫେରି ଆସି ଶୋଇ ପଡ଼ିଲେ ।

ସକାଳେ ଦୁହେଁ ମା'ଙ୍କୁ ପଚାରିଲେ, "ମା, ପିଙ୍ଗଳ ଗଲା କୁଆଡ଼େ ?"

"ତା' କୋଠରୀରେ ଶୋଇଥିବ !" ମା ଉତ୍ତର ଦେଲେ ।

"ନା, ମା, ସିଏ ତା' କୋଠରୀରେ ନାହିଁ କି ଆଉ କେଉଁଠି ବି ନାହିଁ । କପ୍ତାନ ସାଙ୍ଗରେ ସତରେ ପଳେଇ ଯାଇନାହିଁ ତ ?" ଜୀବଦତ୍ତ ପଚାରିଲା ।

ଲକ୍ଷଦତ୍ତ କହିଲା, "ହୋଇଥିବ । କାରଣ କପ୍ତାନ୍ କହୁଥିଲେ ସମୁଦ୍ର ଭିତରେ କୌଣସି ଦ୍ୱୀପରେ ଗୋଟିଏ ପରିତ୍ୟକ୍ତ କୋଠା ଅଛି । ସେ କୋଠା ଭିତରେ କୁଆଡ଼େ ଅନେକ ଧନସମ୍ପତ୍ତି ଲୁଚି ରହିଛି । ପିଙ୍ଗଳ କହୁଥିଲା ପୋତାଧନ ବାହାର କରିବାରେ ସେ ଓସ୍ତାଦ୍ ।"

ମା କହିଲେ, "ତେବେ ସେ ସେହି କପ୍ତାନ୍ ସାଙ୍ଗରେ ବାହାରି ଯାଇଥିବା ଅସମ୍ଭବ ନୁହେଁ । ସେ ସବୁଦିନେ ଦୁଃସାହସିକ କାମ କରିବାକୁ ଭଲପାଏ । ଭଗବାନ କରନ୍ତୁ, ସେ ନିରାପଦରେ ଲେଉଟି ଆସୁ । ତା'ର ଯେପରି ସାହସ, ସମସ୍ତଙ୍କ ପ୍ରତି ସେହିପରି ଦୟା ।"

"ମା, ତମ ଆଖିରେ ପିଙ୍ଗଳର ସବୁ ଗୁଣ ଭଲ । ଆମେ ଅପଦାର୍ଥ । ନା କ'ଣ ? ତମେ ଆମର ଅପମାନ କଲ । ଆମେ ଆଉ ମୁହୂର୍ତ୍ତେ ମଧ୍ୟ ଏଠାରେ ରହିବାକୁ ଚାହୁଁ ନା । ଆମ ବାପା ଯେଉଁ ସବୁ ସମ୍ପତ୍ତି ରଖି ଯାଇଛନ୍ତି, ସେସବୁ ଆମର ପ୍ରାପ୍ୟ । ଆମେ ସେସବୁ ଧରି ଘରୁ ବାହାରି ଯିବା ।" ଏହା କହି ଜୀବଦତ୍ତ ଓ ଲକ୍ଷଦତ୍ତ ପିଙ୍ଗଳ ରଖିଥିବା ଧନ ଦୌଲତ ଓ ତା' ଯାଦୁ ଥଳି ବାହାର କରି ଆଣିଲେ ।

ସେମାନଙ୍କ ମତଲବ୍ ବୁଝିବାକୁ ମା'ଙ୍କୁ ବେଶି ସମୟ ଲାଗିଲା ନାହିଁ । ମା କହିଲେ, "ତମ ବାପାଙ୍କ ସମ୍ପତ୍ତି ତ ତମେ ଦୁହେଁ କାହିଁ କେବେଠୁଁ ଶେଷ କରି ଦେଇଥିଲ । ଘରେ ଯାହା ଅଛି, ସେସବୁ ପିଙ୍ଗଳର ଅର୍ଜିତ ଧନ । ସେସବୁ ନେଇଯିବା ତମର ଅଧର୍ମ ହେବ । ପିଙ୍ଗଳ ଆସି ଖୋଜିଲେ ମୁଁ କ'ଣ କହିବି ?"

"ଚୁପ୍ !" ଜୀବଦତ୍ତ ଓ ଲକ୍ଷଦତ୍ତ ଧମକ ଦେଲେ ।

(କ୍ରମଶଃ)






# କବି-ଯଶ-ପ୍ରାର୍ଥୀ

ନିଶା ଗରଜୁଥାଏ। ଭୁହାଲୁ ଭୁହା ବର୍ଷା ହେଉଥାଏ। ଘଡ଼ଘଡ଼ ମଝିରେ ଶୁଭୁଥାଏ ଶ୍ୱାନଶ୍ୱାପଦଙ୍କ ରଡ଼ ଓ ଅଶରୀରୀମାନଙ୍କ ଅଟ୍ଟହାସ୍ୟ। ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ବି ବିଚଳିତ ନହୋଇ ପୁନର୍ବାର ବୃକ୍ଷାରୋହଣ କଲେ ଓ ଶବଟିକୁ ଉତାରି ଆଣିଲେ। ତେବେ ତାକୁ କାନ୍ଧରେ ପକାଇ ସେ ଶୁନ୍‌ଶାନ୍ ଶ୍ମଶାନପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ଯେ ଏକାମ ହାତକୁ ନେଇଛ, ଏଥିରେ ସିଦ୍ଧି ହେଲେ କିଭଳି ସୁଖଲାଭର ଆଶା କରୁଛ? ଅନେକ ସମୟରେ ସୁଖ ପାଇ ମଧ୍ୟ ମଣିଷ ତାକୁ ଛାଡ଼ି ଦେବାର ଦୃଷ୍ଟାନ୍ତ ରହିଛି। ତମକୁ ଗୋଟାଏ ଘଟଣା କହୁଛି, ମନଦେଇ

## ବେତାଳ କଥା



ଶୁଣ । ଶୁଣିଲେ ଶ୍ରମଭର ଲାଘବ ମନେ ହେବ ।"

ବେତାଳ କହିଲା : କମ୍ବୋଜ ଦେଶରେ ରାଜୁତି କରୁଥିଲେ ରାଜା ଚନ୍ଦ୍ରପାଳ । ସାହିତ୍ୟ ରସିକ ଭାବରେ ତାଙ୍କର ଯେପରି ଖ୍ୟାତି ଥିଲା, ଜ୍ଞାନଚର୍ଚ୍ଚାରେ ମଧ୍ୟ ସେ ସେହିପରି ଆଗ୍ରହୀ ଥିଲେ । ତାଙ୍କ ଦରବାରକୁ ଅନେକ କବି ଓ ପଣ୍ଡିତ ଆସୁଥିଲେ । ସେମାନେ ଯଥାବିଧି ଅଭିନନ୍ଦନ ପାଉଥିଲେ ।

ସେହି ରାଜ୍ୟରେ ଶ୍ରାବଣ ନାମକ ଯୁବକ ଥିଲା । ସେ କବିତା ଲେଖିବାକୁ ଅଭ୍ୟାସ କରୁଥିଲା । ତେବେ ଗାଁରେ ବସି କବିତା ଲେଖି କେହି ପେଟ ପୋଷି ପାରେନା । ତେଣୁ ସେ କ'ଣ କରିବ ସେ ବିଷୟରେ ଅନେକ ଚିନ୍ତା କରି ରାଜଦରବାରରେ ପହଞ୍ଚିଲା ।

"ମହାରାଜ, କବି ହେବାପାଇଁ ମୋର ବାସନା ବଡ଼ ପ୍ରବଳ । କିନ୍ତୁ ଚଳିବ କିପରି ?" ସେ କହିଲା ।

"ତମେ କବିତା ଲେଖିଲଣି ?" ରାଜା ପ୍ରଶ୍ନ କଲେ ।

"ହଁ, ମହାରାଜ !" ଏହା କହି ଶ୍ରାବଣ ଗୋଟିଏ କବିତା ପଢ଼ି ରାଜାଙ୍କୁ ଶୁଣାଇଲା । ରାଜା ଖୁସି ହେଲେ ଓ ଶ୍ରାବଣକୁ ରାଜଦରବାରରେ ନିଯୁକ୍ତି ଦେଲେ । ରାଜାଙ୍କ କବିତା ପ୍ରେମ ଦେଖି ଶ୍ରାବଣ ମୁଗ୍ଧ ହେଲା ।

ସବୁଦିନ ସନ୍ଧ୍ୟାରେ ରାଜାଙ୍କ ଆଗରେ ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳରୁ ଆସିଥିବା କବିମାନେ କବିତା ପଢ଼ନ୍ତି । ରାଜା ସେସବୁ ମୁଗ୍ଧ ହୋଇ ଶୁଣନ୍ତି ଓ କବିମାନଙ୍କୁ ଅଭିନନ୍ଦନ ଜଣାନ୍ତି ।

ଶ୍ରାବଣ ଦେଖିଲା, ଯେଉଁ କବିତାମାନ ରାଜାଙ୍କୁ ପରିବେଷଣ କରାହୁଏ, ସେସବୁ ତ୍ରୁଟିପୂର୍ଣ୍ଣ । ଅନେକ କବିତା ମୋଟେ କବିତା ପଦବାଚ୍ୟ ନୁହେଁ ।

ସେ ଭାବିଲା, କବିମାନେ ଗରିବ ବୋଲି ରାଜା ସେମାନଙ୍କୁ ସାହାଯ୍ୟ କରୁଛନ୍ତି । କିନ୍ତୁ ସେ ଅନୁସନ୍ଧାନ କରି ଦେଖିଲା, ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ବେଶ୍ ଥିଲାବାଲା ଲୋକ । ରାଜାଙ୍କଠାରୁ

ସାହାଯ୍ୟ ନ ପାଇଲେ ସେମାନଙ୍କର କୌଣସି କ୍ଷତି ହେବ ନାହିଁ ।

ଶ୍ରାବଣ ଯେତେବେଳେ କିଛି ନୂଆ କବିତା ଲେଖି ରାଜାଙ୍କୁ ଶୁଣାଏ, ରାଜା ଖୁସି ହୁଅନ୍ତି ଓ ତାକୁ ଅଭିନନ୍ଦନ ଜଣାନ୍ତି । କିନ୍ତୁ ରାଜା ତାହାଠାରୁ ଅଯୋଗ୍ୟ କବିଙ୍କୁ ବି ଏକାପ୍ରକାର ଅଭିନନ୍ଦନ ଜଣାଉଥିବା ସ୍ଥଳେ ଶ୍ରାବଣ ସେ ଅଭିନନ୍ଦନରେ ବିଶେଷ ଖୁସି ହୋଇ ପାରେ ନାହିଁ ।

ଏହିପରି ଭାବରେ ଛଅମାସ ବିତିଗଲା । ଦିନେ ଶଙ୍କରାନନ୍ଦ ନାମକ ଜଣେ କବି ଆସି କେଇଦିନ ପାଇଁ ରାଜାଙ୍କର ଅତିଥି ହେଲେ । ଶଙ୍କରାନନ୍ଦ ଜମ୍ବୁଦ୍ୱୀପ ବ୍ୟାପି କବି ହିସାବରେ ଖ୍ୟାତି ଲଭିଥାନ୍ତି । ସବୁ ରାଜାଙ୍କ ଦରବାରରେ ତାଙ୍କୁ ସମ୍ବର୍ଦ୍ଧନା ଦିଆ ହେଉଥାଏ । କମ୍ବୋଜ ଦରବାରରେ ମଧ୍ୟ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ମିଳିଲା ।

ଦିନେ ଶ୍ରାବଣ ଶଙ୍କରାନନ୍ଦଙ୍କୁ ସାକ୍ଷାତ କରି ନିଜର କେତୋଟି ସୁନିର୍ବାଚିତ କବିତା ତାଙ୍କୁ ଦେଖାଇଲା ଓ କହିଲା, "ମହାଶୟ, ମୁଁ କବି ବୋଲି ମୋତେ ମାସିକ ଏକ ସହସ୍ର ମୁଦ୍ରାରେ ରାଜ-ଦରବାରରେ ଚାକିରି ମିଳିଛି । ଆପଣ ମୋ କବିତା ପଢ଼ନ୍ତୁ ଓ ମତାମତ ଦିଅନ୍ତୁ । ମୋ କବିତା ରସୋତ୍ତୀର୍ଣ୍ଣ ନା ନାହିଁ ?"

ଶଙ୍କରାନନ୍ଦ ମନଧ୍ୟାନ ଦେଇ କବିତା କେତୋଟି ପଢ଼ିଲେ ଓ କହିଲେ, "ବାପା, ଏ ରାଜା ବଡ଼ ଦୟାଳୁ ବ୍ୟକ୍ତି । ତୁମେ ଭାଗ୍ୟବାନ ! ତୁମର ଭବିଷ୍ୟତ ଉଜ୍ଜ୍ୱଳ ।"





ଶ୍ରାବଣ ମୁହଁରେ ପ୍ରଥମେ ହସ ଫୁଟି ଉଠିଲା। ତା'ପରେ ସେ ଗମ୍ଭୀର ଦେଖାଗଲା। ମୁହୂର୍ତ୍ତେ ନୀରବ ରହି ସେ କହିଲା, "ଆପଣଙ୍କୁ ଧନ୍ୟବାଦ। ଆପଣ ମୋର ଆଖି ଖୋଲି ଦେଲେ।"

ଶଙ୍କରନନ୍ଦଙ୍କୁ ଜୁହାର କରି ସେ ସିଧାସଳଖ ମନ୍ତ୍ରୀଙ୍କ ପାଖକୁ ଯାଇ କହିଲା, "ଆଜ୍ଞା, ମୋତେ କାଶୀ ଯାଇ କାବ୍ୟଶାସ୍ତ୍ର ଅଧ୍ୟୟନ କରିବାକୁ ପଡ଼ିବ। ଏଠାକାର ଦରବାରୀ ପଦରୁ ମୋତେ ଅବ୍ୟାହତି ମିଳୁ।"

ମନ୍ତ୍ରୀ ଈଷତ୍ ହସି କହିଲେ, "ହେଉ, କିନ୍ତୁ ରାଜାଙ୍କୁ ସାକ୍ଷାତ ନକରି ଯଦି ଚାଲିଯିବ, ତେବେ ତାହା କୃତଘ୍ନତା ହେବ। କୃତଘ୍ନତା ମହାପାପ।"

"ନା, ମହାମନ୍ତ୍ରୀ ମହୋଦୟ! ମୁଁ କୃତଘ୍ନ ହେବି ନାହିଁ। ରାଜାଙ୍କ ଅନୁମତି ନେଇ ଯିବି ଓ ଆଜୀବନ ତାଙ୍କ ପ୍ରତି ତଥା ଆପଣଙ୍କ ପ୍ରତି କୃତଜ୍ଞ ରହିବି।"

ଏହାପରେ ଶ୍ରାବଣ ଯାଇ ରାଜାଙ୍କୁ ସାକ୍ଷାତ୍ କରି ବିଦାୟ ନେଇ କାଶୀ ଚାଲିଗଲା।

ବେତାଳ ଟିକିଏ ଚୁପ୍ ରହି ତା'ପରେ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା! ଶଙ୍କର-ନନ୍ଦଙ୍କ କଥାରେ ଏପରି କ'ଣ ଥିଲା ଯେ ଶ୍ରାବଣ ପ୍ରଥମେ ଖୁସି ହୋଇ ପୁଣି ଗମ୍ଭୀର ହୋଇଗଲା? ପୁଣି ସଙ୍ଗେ ସଙ୍ଗେ ସେ ଦରବାରର ସୁଖ ସୁବିଧା ଛାଡ଼ି କାଶୀ ଯିବାକୁ କାହିଁକି ବାହାରି ପଡ଼ିଲା? ରାଜା ତାକୁ ଦରବାରରେ ରଖାଇଥିଲେ। ତେଣୁ ସେ ରାଜାଙ୍କ ପ୍ରତି କୃତଜ୍ଞ ରହିବା ସ୍ୱାଭାବିକ। କିନ୍ତୁ ମନ୍ତ୍ରୀଙ୍କ ପ୍ରତି ସେ କୃତଜ୍ଞ ରହିବେ ବୋଲି କାହିଁକି କହିଲେ? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ।"

ମୁହୂର୍ତ୍ତେ ମଧ୍ୟ ଦ୍ୱିଧା ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ: "ଶଙ୍କରନନ୍ଦଙ୍କ କଥା ପ୍ରଥମେ ଉପରଠାଉରିଆ ଭାବରେ ଶୁଣି ଶ୍ରାବଣ ଖୁସି ହୋଇ ଯାଇଥିଲା। ପରେ ପରେ ସେ ତା'ର ମର୍ମ ଅନୁଭବ କରି ଗମ୍ଭୀର ହେଲା। ଯେଉଁ ବିଷୟରେ ଆଲୋଚନା

ହେଉଥିଲା, ସେ ପ୍ରସଙ୍ଗରେ ଶଙ୍କରାନନ୍ଦ ରାଜାଙ୍କ ରସଗ୍ରାହିତା ବିଷୟରେ ମନ୍ତବ୍ୟ ଦେବା ସ୍ୱାଭାବିକ ହୋଇଥାନ୍ତା । ତାହା ନକରି ସେ କହିଲେ ରାଜା ଦୟାଳୁ । ଅର୍ଥାତ୍ ରାଜାଙ୍କ କାବ୍ୟକବିତା ବୁଝିବା ଶକ୍ତି ଉପରେ ଶଙ୍କରାନନ୍ଦଙ୍କର ଆସ୍ଥା ନଥିଲା । ଦ୍ୱିତୀୟରେ ଶ୍ରାବଣଙ୍କୁ ସେ ଭାଗ୍ୟବାନ ବୋଲି କହିଲେ । ଅର୍ଥାତ୍ ଶ୍ରାବଣ ତାଙ୍କ କବି ପ୍ରତିଭା ଯୋଗୁଁ ଏକ ସହସ୍ର ମୁଦ୍ରା ଦରମା ପାଇବା କଥା ନୁହେଁ, ଭାଗ୍ୟ ଯୋଗୁଁ ପାଇଛନ୍ତି । ତୃତୀୟରେ ସେ କହିଲେ ଶ୍ରାବଣଙ୍କ ଭବିଷ୍ୟତ ଉଜ୍ଜ୍ୱଳ । ଅର୍ଥାତ୍ ବର୍ତ୍ତମାନ ଅବସ୍ଥାରେ ତାଙ୍କ କବିତା ଏପରି କିଛି ମୂଲ୍ୟବାନ ନୁହେଁ ।

"ଶ୍ରାବଣ ଦେଖିଲେ ଯେଉଁ ଦରବାରରେ ଅନ୍ୟ କବିମାନେ ତାଙ୍କଠୁଁ ବହୁତ କମ ସ୍ତରର କବିତା ଲେଖୁଛନ୍ତି, ସେଠି ତାଙ୍କୁ ଦିଗ୍‌ଦର୍ଶନ ଦେବି କିଏ ଯେ ତାଙ୍କର ଭବିଷ୍ୟତ ଉଜ୍ଜ୍ୱଳ ହେବ ? ତେଣୁ ସେ କାଶୀ ଯାଇ ବିଦ୍ୱାନ-ମାନଙ୍କ ସାହାଯ୍ୟ ଲୋଡ଼ିବାକୁ ସ୍ଥିର କଲେ ।

"ମନ୍ତ୍ରୀଙ୍କ ପ୍ରତି ତାଙ୍କର କୃତଜ୍ଞ ହେବାର କାରଣ ଅତି ସୂକ୍ଷ୍ମ । ରାଜାଙ୍କ ରସଜ୍ଞାନ ନଥିବା କଥା ସେ ବୁଝିଥିଲେ । କାଳେ ସେକଥା ଅନ୍ୟନ କହି ସେ ରାଜାଙ୍କ ସୁନାମରେ ଆଞ୍ଚ ଆଣିବେ, ମନ୍ତ୍ରୀ ସେହି ଆଶଙ୍କା କରୁଥିଲେ । ରାଜା କବିତା ବୁଝନ୍ତୁ ବା ନ ବୁଝନ୍ତୁ, ରାଜା ଯେ ଶ୍ରାବଣଙ୍କର ବହୁତ ଉପକାର କରିଛନ୍ତି ଏବଂ ସେ ଯୋଗୁଁ ଶ୍ରାବଣ ତାଙ୍କ ପ୍ରତି କୃତଘ୍ନ ହେବା ଅନୁଚିତ, ମନ୍ତ୍ରୀ ପରୋକ୍ଷରେ ଏହି କଥା ଚେତେଇ ଦେଲେ । ଶ୍ରାବଣଙ୍କର ସଦ୍‌ବୁଦ୍ଧି ଥିବାରୁ ସେ ବୁଝିଲେ ଯେ ବାସ୍ତବିକ୍ ମନ୍ତ୍ରୀ ତାଙ୍କୁ ପାପ କରିବାରୁ ରକ୍ଷା କଲେ । ବାସ୍ତବିକ୍ କୃତଘ୍ନତା ଏକ ମହାପାପ ।"

ରାଜାଙ୍କ ଉତ୍ତରଦାନ ଶେଷ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ଯାହାର ଆଖି ଯେପଟକୁ!

ବିନ୍ଧ୍ୟାଚଳ ପ୍ରଦେଶରେ ଗୋଟିଏ ସରୋବର କୂଳରେ ମାତଙ୍ଗ ସ୍ୱାମୀ ନାମକ ଗୁରୁ ବାସ କରୁଥିଲେ । ସେ ଜଣେ ପ୍ରବୀଣ ଶିକ୍ଷକ । ତାଙ୍କ ନିକଟରୁ ଶିକ୍ଷାଲାଭ କରିବା ନିମନ୍ତେ ରାଜ୍ୟର ଅନେକ ବିଶିଷ୍ଟ ବ୍ୟକ୍ତି ସେମାନଙ୍କ ପୁଅ ନାତିଙ୍କୁ ଛାଡ଼ିଥାନ୍ତି । ଫଳରେ ଗୋଟିଏ ଗୁରୁକୁଳ ଗଢ଼ି ଉଠିଥାଏ ।

ଗୁରୁକୁଳର ପିଲାମାନେ ଖାଲି ଶିକ୍ଷା-ଦୀକ୍ଷାରେ ନୁହେଁ, ଆଗୃର ବ୍ୟବହାରରେ ମଧ୍ୟ ଉପଯୁକ୍ତ ତାଲିମ୍ ପାଉଥାନ୍ତି ।

ଶିକ୍ଷାର୍ଥୀମାନଙ୍କ ଭିତରେ ଥାଏ ବିରୂପ ନାମକ ପିଲା । ସେ ରାଜାଙ୍କ ଭଣଜା । ପିଲାଟି ବୁଦ୍ଧିମାନ, କିନ୍ତୁ ଅତ୍ୟନ୍ତ ଚପଳ ଓ ଅବାଧ୍ୟ । ମାତଙ୍ଗ ସ୍ୱାମୀଙ୍କ ଡାହାଣ ଗୋଡ଼ ଟିକିଏ ଖର୍ବ ଥିବାରୁ ସେ ତାଙ୍କୁ ତାଙ୍କ ଅଗୋଚରରେ ଲେଙ୍ଗଡ଼ା ସ୍ୱାମୀ ବୋଲି କହୁଥାଏ ।

ବିରୂପର କଥାବାର୍ତ୍ତା ଢଙ୍ଗଢାଙ୍ଗ ଯେ ଅନ୍ୟ ଛାତ୍ରମାନେ ପସନ୍ଦ କରୁଥାନ୍ତି, ତାହା ନୁହେଁ । କିନ୍ତୁ ସେମାନେ ତାକୁ କିଛି କହୁ ନଥାନ୍ତି । କାରଣ, ଗୁରୁ କହିଥାନ୍ତି, ପ୍ରତ୍ୟେକ ନିଜ ନିଜର ଉନ୍ନତି ପାଇଁ ସର୍ବଦା ଚେଷ୍ଟା କରିବେ । ଅନ୍ୟର ଦୋଷ ତ୍ରୁଟି ପ୍ରତି ଦୃଷ୍ଟି ଦେବା ଆବଶ୍ୟକ ନୁହେଁ । ତେଣୁ ସମସ୍ତେ ବିରୂପକୁ ଏଡ଼ାଇ ଚଳୁଥାନ୍ତି ।

ଦିନେ ଗୁରୁ ପାଠ ପଢ଼ଉଥିବା ଅବସରରେ କହିଲେ : ପିଲାମାନେ, ଆଜି ତମମାନଙ୍କୁ ଗୋଟିଏ ଗପ ଶୁଣାଇବି । ଅନେକ ବର୍ଷ ତଳର କଥା । ଏଠାରୁ ବହୁ ଦୂରରେ ବଣ ଭିତରେ ଭୈରବାନନ୍ଦ ନାମକ ଜଣେ ପ୍ରବୀଣ ଗୁରୁ ଥିଲେ । ସେ ମନ୍ତ୍ରତନ୍ତ୍ରରେ ମଧ୍ୟ ଧୁରନ୍ଧର ଥିଲେ । ପାଠ ପଢ଼ା ଶେଷ ହେବା ପରେ ଯଦି କୌଣସି ଶିଷ୍ୟ ବିଶେଷ ଆଗ୍ରହ ଦେଖାଉଥିଲା,



ତେବେ ସେ ତାଙ୍କୁ କିଛି ମନ୍ତ୍ରତନ୍ତ୍ର ବିଦ୍ୟା ଶିଖାଇ ଦେଉଥିଲେ ।

ଅବଶ୍ୟ ମନ୍ତ୍ରତନ୍ତ୍ର ସେ ସହଜରେ କାହାକୁ ଦେଉ ନଥିଲେ । ଯିଏ ସେସବୁର ଉପଯୁକ୍ତ ବ୍ୟବହାର କରିବ, କେବଳ ତାଙ୍କୁହିଁ ଦେଉଥିଲେ ।

ଥରେ ଶିକ୍ଷା ଶେଷ ହେବା ପରେ ଅନ୍ୟ ଶିଷ୍ୟମାନେ ଚାଲିଗଲେ, କିନ୍ତୁ ଦୁଇଜଣ ରହିଗଲେ । ସେମାନେ ମନ୍ତ୍ରବିଦ୍ୟା ଶିଖିବା ନିମନ୍ତେ ଜିଗର ଲଗାଇବାରୁ ଗୁରୁ କହିଲେ, "ତମମାନଙ୍କୁ ଗୋଟିଏ ବିଦ୍ୟା ଶିଖାଇଦେବି । ଆଉ ଅଧିକ ନୁହେଁ । କାରଣ ମନ୍ତ୍ରତନ୍ତ୍ର ଶିକ୍ଷା ତମମାନଙ୍କ ପାଇଁ ନୁହେଁ ବୋଲି ମୁଁ ବୁଝୁଛି ।"

ଏହା କହି ଗୁରୁ ସେମାନଙ୍କୁ ଏପରି ଗୋଟିଏ ମନ୍ତ୍ର ଶିଖାଇଦେଲେ, ଯାହା ଫଳରେ ସେମାନେ ଇଚ୍ଛାମାତ୍ରେ ଅନ୍ୟ ଯେ କୌଣସି ପ୍ରାଣୀରେ ପରିଣତ ହୋଇ ପାରିବେ । କିନ୍ତୁ ଗୁରୁ କହିଦେଲେ, "ସାବଧାନ, ଅତ୍ୟନ୍ତ ଜରୁରୀ ପ୍ରୟୋଜନ ଉପସ୍ଥିତ ନହେଲେ ଏ ବିଦ୍ୟା ପ୍ରୟୋଗ କରିବ ନାହିଁ । ଖାଲି ମଜା ବା କୌତୁହଳ ପାଇଁ କଦାପି ନୁହେଁ ।"

ଶିଷ୍ୟ ଦୁଇଜଣ ଖୁବ୍ ଖୁସି ହୋଇଗଲେ । "ନା, ଗୁରୁଦେବ, ବିନା ପ୍ରୟୋଜନରେ ଆମେ ମନ୍ତ୍ର କଦାପି ପ୍ରୟୋଗ କରିବୁଁ ନାହିଁ ।" ଦୁହେଁ କହିଲେ ।

ଦୁଇ ଶିଷ୍ୟ ଗୁରୁଙ୍କଠାରୁ ବିଦାୟ ନେଇ ଗଲେ । ବାଟରେ ନଈ ପଡ଼ିଲା । ନାଉରିଆ ବିପରୀତ ତୀରରେ ଥିଲା । ପ୍ରଥମ ଶିଷ୍ୟ କହିଲା, "ସିଏ ଫେରିବା ଯାଏ ଅପେକ୍ଷା ନକରି ମାଛ ହୋଇ ଆମେ ଅନ୍ୟ ପାଖକୁ ଚାଲିଯିବା ଆସ ।"

"ନା, ନା, । ଗୁରୁ କହିଥିଲେ ଅତ୍ୟନ୍ତ ପ୍ରୟୋଜନ ନହେଲେ ଏପରି କରିବା କଥା ନୁହେଁ ।" ଦ୍ୱିତୀୟ ଶିଷ୍ୟ କହିଲା ।

"ଆରେ ଭାଇ, ଆମେ ଯଦି ମନ୍ତ୍ରକୁ କାର୍ଯ୍ୟକାରୀ ନ କରିବା, ତେବେ ତାହା ଶିଖି ଲାଭ ହେଲା କ'ଣ ? ଆସ, ଆସ, ମାଛ ହୋଇ ଶୀଘ୍ର ସେ ପାଖକୁ ଚାଲିଯିବା ।" ପ୍ରଥମ ଶିଷ୍ୟ କହିଲା ।

"ନା, ଗୁରୁ କ'ଣ କହିବେ ?" ଦ୍ୱିତୀୟ ଶିଷ୍ୟ ପ୍ରତିବାଦ କଲା ।

"ଆରେ, ଗୁରୁ କ'ଣ ଏଠି ଦେଖୁଛନ୍ତି ?" ଏହା କହି ପ୍ରଥମ ଶିଷ୍ୟ ମାଛ ବନି ଅନ୍ୟ ପାଖକୁ ଚାଲିଗଲା । ଦ୍ୱିତୀୟ ଶିଷ୍ୟ କିଛି ସମୟ ପରେ ନୌକାରେ ନଈ ପାରି ହେଲା ।

ସେମାନେ ଯେଉଁ ସହରକୁ ଯାଉଥିଲେ, ତାହା ବହୁତ ଦୂର । ପ୍ରଥମ ଶିଷ୍ୟ ପୁଣି କହିଲା, "ଗୋଟାଏ କାମ କରିବା ଚାଲ । ଚଢ଼େଇ ବନି ଉଡ଼ି ଚାଲିଯିବା ।"

ଦ୍ୱିତୀୟ ଶିଷ୍ୟ ରାଜି ହେଲା ନାହିଁ । ପ୍ରଥମ ଜଣକ ଗୋଟାଏ କପୋତ ବନି ଉଡ଼ିଗଲା । କିଛି ସମୟ ଉଡିବା ପରେ ସେ କ୍ଳାନ୍ତହୋଇ ଗୋଟାଏ ଗଛ ଡାଳରେ ବସି ପଡିଛି, ହଠାତ୍ ବଡ଼ ଧରଣର ଚିଲଟିଏ ଆସି ଝାମମାରି ତାକୁ ଧରି ଉଡ଼ିଗଲା । ଚିଲ ଦାଉରୁ ରକ୍ଷା ପାଇବା ପାଇଁ ସେ ମନ୍ତ୍ରୀଷ ହୋଇଗଲା ଓ ଶୂନ୍ୟରୁ ଖସି ଆସି ତଳେ ପଡ଼ି ଡାହାଣ ଗୋଡ଼ରେ ଆଘାତ ପାଇଲା ଓ ଛୋଟା ହୋଇଗଲା ।

ମାତଙ୍ଗ ସ୍ୱାମୀଙ୍କ ଗଳ୍ପ ପିଲାଏଁ ମୁଗ୍ଧ ହୋଇ ଶୁଣୁଥିଲେ । ସେ କହିଲେ, "ପିଲାଏଁ, ସେଦିନର ସେ ଯୁବକ କିଏ ଜାଣ ? ସିଏ ମୁଁ । ଗୁରୁଙ୍କ ନିର୍ଦ୍ଦେଶ ଅମାନ୍ୟ କରିଥିବା ହେତୁ ମୁଁ ଛୋଟା ହୋଇଛି । ସିଏ ଅବାଧ୍ୟ ହେବ, ସିଏ ତା'ର ଫଳ ଭୋଗିବ । ମୁଁ ଲେଙ୍ଗଡ଼ା । ତେଣୁ ମୋତେ ଲେଙ୍ଗଡ଼ା କହିଲେ ମୋର କିଛି ହାନି ହେବ ନାହିଁ । କିନ୍ତୁ ସିଏ କହିବ, ତା'ର ସ୍ୱଭାବ ସେଥିରୁ ଜଣା ପଡିଯିବ । ସିଏ ମୋର ଗୁଣ-ପଣ ନଦେଖି ମୋ ଦେହର ତ୍ରୁଟି ଦେଖିଲା । ଅର୍ଥାତ୍, ତା'ର ଦେଖିବା ଶକ୍ତି ଅତି ସୀମାବଦ୍ଧ ।"

ସବୁ ପିଲା ସ୍ୱରୂପ ଆଡ଼େ ଅନାଇଲେ । ସେ ମୁଣ୍ଡ ତଳକୁ କରି ବସି ରହିଲା । ଏହା ପରେ ସେ କଥାବାର୍ତ୍ତା ଓ ବ୍ୟବହାରରେ ବହୁତ ସଂଯତ ହେଲା ।






# ଚାଲିକା

ଯଦୁବାବୁ ଜଣେ ଗ୍ରେଷ୍ଠିଆ ଜମିଦାର ଥିଲେ । ତାଙ୍କର ଗୋଟିଏ ବୋଲି ସନ୍ତାନ । ନାମ ଲଳିତା । ପିଲାବେଳଠୁଁ ତା' ମା ମରିଯାଇଥାଏ । ସାବତ ମା' ତାକୁ ବଡ଼ ଦରଗଞ୍ଜି କରୁଥାଏ । ସାବତ ମା'ର ଉପଦ୍ରବ ସହି ସହି ଲଳିତା ରହିଥାଏ । କିନ୍ତୁ ଯେଉଁଦିନ ସାବତ ମା' ବି ମରିଗଲା, ସେହିଦିନ ସେ ଯେମିତି ଦୁନିଆ ଉପରେ ପ୍ରତିଶୋଧ ନେବାକୁ ପ୍ରସ୍ତୁତ ହୋଇଗଲା !

ଗୃହର ଚାକର ସାହି ପଡ଼ିଶା ସମସ୍ତଙ୍କ ପ୍ରତି ଲଳିତା କର୍କଶ ବ୍ୟବହାର କରିବାକୁ ଲାଗିଲା । ସେତେବେଳକୁ ଯଦୁବାବୁଙ୍କ ବୟସ ବେଶି ନହେଲେ ବି ରୋଗ ଯୋଗୁ ସେ ଶଯ୍ୟାଶାୟୀ । ସମସ୍ତଙ୍କ ପ୍ରତି ଭଲ ବ୍ୟବହାର କରିବା ନିମନ୍ତେ ସେ ପିଲାକୁ କେତେ ପ୍ରକାରେ ବୁଝାଉଥାନ୍ତି । କିନ୍ତୁ ଲଳିତାର ଗୋଟାଏ ଉତ୍ତର : "ମୁଁ ହକ୍ କଥା କହେ । କାହାକୁ ଖାତିର୍ କରେ ନାହିଁ ।"

ଲଳିତାକୁ କାହାକୁ ବାଧା ଦେବେ, ଯଦୁବାବୁଙ୍କର ଏହା ହେଲା ବଡ଼ ଚିନ୍ତା । ତାଙ୍କର ଜଣେ ବାଲ୍ୟବନ୍ଧୁ ଥା'ନ୍ତି । ତାଙ୍କ ନାମ ବଂଶୀବାବୁ । ଅନେକ ସମୟରେ ବଂଶୀବାବୁଙ୍କୁ ଯଦୁବାବୁ ସାହାଯ୍ୟ କରୁଥା'ନ୍ତି । ବଂଶୀବାବୁ ବି ଯଦୁବାବୁଙ୍କୁ ବହୁତ ଶ୍ରଦ୍ଧା କରୁଥା'ନ୍ତି ।

ଦିନେ ଯଦୁବାବୁ ବଂଶୀବାବୁଙ୍କୁ ତାଙ୍କ ସମସ୍ୟା କଥା କହିବାରୁ ବଂଶୀବାବୁ କହିଲେ, "ଭାଇ, ତମେ ମୋ ପୁଅ ସୁଧୀରକୁ ତ ଜାଣ ! ସେ ଅନେକ ବର୍ଷ ହେଲା ସହରରେ ଅଛି । ମୁଁ ବୁଢ଼ା ହେଲଣି । ତାକୁ ଲେଖିଛି, ଚାକିରି ଛାଡ଼ି ସେ ଚାଲିଆସୁ ଓ ଘର ଦାୟିତ୍ୱ ନେଉ । ତା'ସହ ଲଳିତାର ବିବାଦ ହେଲେ କିପରି ହୁଅନ୍ତା ?"

ଯଦୁବାବୁ ଆଖି ଛଳ ଛଳ କରି କହିଲେ, "ଭାଇ ବଂଶୀ, ତମକୁ ମୁଁ କ'ଣ କହି

ପଚଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ




ଧନ୍ୟବାଦ ଦେବ ? ଲଳିତା ଭଳି ବଦ୍‌ମେଜାଜି ଝିଅକୁ ବୋହୂ କରି ନେବାକୁ ତୁମର ଯେ ଦ୍ୱିଧା ନାହିଁ, ଏହା କେବଳ ମୋ ପ୍ରତି ସହାନୁଭୂତି ଯୋଗୁଁ ।"

"ଲଳିତା ବଦ୍‌ମେଜାଜି ସତ, କିନ୍ତୁ ତା' ହୃଦୟ ଭଲ । ବ୍ୟବହାର ବଳେ ସୁଧାରି ହୋଇଯିବ ।" ବଂଶୀବାବୁ କହିଲେ ।

ବାହାଘର ହୋଇଗଲା । ପରେ ପରେ ଯଦୁବାବୁ ଓ ବଂଶୀବାବୁ ମରିଗଲେ । ଯଦୁବାବୁଙ୍କ ସବୁ ସମ୍ପତ୍ତି ଲଳିତା ଓ ସୁଧୀର ପାଇଲେ । ତେଣୁ ସେମାନଙ୍କର ଅଭାବ ବୋଲି କିଛି ନ ଥାଏ କିନ୍ତୁ ଲଳିତା ଗୋଟାଏ ବି ପଇସା ଖର୍ଚ୍ଚ କରିବାକୁ ରାଜି ନୁହେଁ । ଘରେ ଚାକର ବାକର ରଖିବାକୁ ଦେବ ନାହିଁ । ସବୁ କାମ ସେ ନିଜେ କରିବାକୁ ଚେଷ୍ଟା କରିବ । ସେ ତ ପାରିବ ନାହିଁ, ଫଳରେ ସୁଧୀରକୁହିଁ ସବୁ କରିବାକୁ ହୁଏ । ସୁଧୀର ଯଦି ଟିକିଏ କାମ ଦାମରେ ବିଳମ୍ବ ବା ହେଳା କରେ, ତେବେ ଲଳିତା ରଡ଼ି କରି ତାକୁ ଗାଳି ଦିଏ ।

ଦିନେ ଲଳିତା କହିଲା, "ଦେଖ କାମର ଗୋଟାଏ ତାଲିକା କରାଯାଉ । ତାଲିକାର ସବୁ କାମ ତମେ କରିବ । ତା' ବାହାରେ ଯାହା; ସେ ସବୁ ମୁଁ କରିବ ।"

"ହଉ, ସେଇଆ ହଉ ।" ସୁଧୀର କହିଲା ।

"ଏଇଟି ତାଲିକା ହୋଇଗଲା । ଏଥିରେ ଥିବା କାମଦାମ ମନ ଦେଇ କର । ଏହା ବାହାରେ ଗୋଟାଏ ବି କାମ କରିବାକୁ ହେବ ନାହିଁ ।" ଲଳିତା କହିଲା । ସୁଧୀର ଦୀର୍ଘନିଶ୍ୱାସ ଛାଡ଼ିଲା । ପ୍ରଥମ କଥା ତାଲିକା ଦୀର୍ଘ । ଦ୍ୱିତୀୟରେ, ସବୁ କାମ କଲେ ବି ଲଳିତା କିଛି ନା କିଛି ଭୁଲ୍ ଧରିବ ।

ଗୋଟାଏ ଉତ୍ସବ ଆସୁଥାଏ । "ନିଅ, ସବୁ ଲୁଗାପଟା, ସତରଞ୍ଚି, ପର୍ଦ୍ଦା ଇତ୍ୟାଦି କାଚି ଆଣ ।" ଲଳିତା କହିଲା ।

"ଅରେ ବାପ୍, ଏହା କ'ଣ ସମ୍ଭବ ?" ସୁଧୀର ଆତଙ୍କିତ ହୋଇ କହିଲା ।

"କାହିଁକି, ଲୁଗାପଟା କାଚିବା କାମ କ'ଣ ତାଲିକାରେ ନାହିଁ ?" ଲଳିତା ଜବାବ୍ ଦେଲା ।

"ଲୁଗାପଟା କାଟିବା କାମ ଅଛି ଯେ, କଂଭୁ ସତରଞ୍ଜି, ପର୍ଦ୍ଦା ଇତ୍ୟାଦି କସ୍ତକଟ କରିବା ପାଇଁ ଜଣେ ଲୋକ ଆଣିଲେ ହୁଅନ୍ତା ନାହିଁ ?"

"ପଇସା ଶସ୍ତା ହୋଇଛି ପରା ! ଚାଲ, ଚାଲ, ସବୁ ଉଠାଅ ।" ଏହା କହି ଲଳିତା ସବୁ ଗଡେଇ ଦେଲା । ଅଗତ୍ୟା ସୁଧୀର ସବୁ ଧରି ପୋଖରୀ ପାଖକୁ ଗଲା ଓ କାଟିବା ଆରମ୍ଭ କଲା ।

"ସେମିତି ନୁହେ, ଏମିତି ଜୋରରେ କଚାଡ଼ !" କହି ଲଳିତା ସତରଞ୍ଜି ଖଣ୍ଡିକ ସୁଧୀର ହାତରୁ ନେଇ ପଥର ଉପରେ ଚଢ଼ିଛି, ଗୋଡ଼ ଖସି ପାଣିରେ ପଡ଼ିଗଲା ।

"ମୋତେ ଉଠାଅ, ଉଠାଅ ।" ସେ ପାଟି କଲା ।

"ବ୍ୟସ୍ତ ହୁଅ ନାହିଁ । ପାଣି ତମ ବେକଯାଏ ହେବ ।" କହି ସୁଧୀର ଦୌଡ଼ି ଦୌଡ଼ି ଘର ଭିତରକୁ ଗଲା ଓ ପୁଣି ଫେରି ଆସିଲା ।

"କୁଆଡ଼େ ପଳାଇ ଯାଇଥିଲ ?" ଲଳିତା କାନ୍ଦି କାନ୍ଦି ହୋଇ ସୁଧୀରକୁ ପଚାରିଲା ।

"ତାଲିକା ଆଣିବାକୁ । ତମକୁ ପାଣିରୁ ଉଠାଇବା କାମ ମୋର କି ନୁହେଁ, ତାହା ଦେଖିବାକୁ ହେବ ତ !"

"ମୁଁ ଶୀତରେ ମଲିଣି । ପୁଣି ଜୋକ ଲାଗୁଛନ୍ତି । ତମେ ତାଲିକା କ'ଣ ଦେଖୁଛ ?"

"ତାଲିକା ବାହାରେ କାମ କଲେ ପୁଣି ଗାଳି ଖାଇବାକୁ ହେବ ନାହିଁ ତ ?"

"ଫୋପାଡ଼ି ଦିଅ ସେ ତାଲିକା ! ମୋତେ ରକ୍ଷା କର ?" ଲଳିତା କାନ୍ଦି ପକାଇ କହିଲା ।

"ଭଲ କଥା !" କହି ସୁଧୀର ତାଲିକା ଫୋପାଡ଼ି ଦେଲା ଓ ଲଳିତାକୁ କୂଳକୁ ଆଣିଲା ।

ତେଣିକି ଆଉ ଲଳିତା ତାଲିକା କଥା ଉଠାଏ ନାହିଁ । କ୍ରମେ ସେ ସବୁ ବିଷୟରେ ନମ୍ର ହେବାକୁ ଶିଖିଲାଣି ।





# ମନୁଷ୍ୟ ଜନ୍ମ

ସେତେବେଳେ ବ୍ରହ୍ମଦତ୍ତ କାଶୀ ରାଜ୍ୟରେ ରାଜୁତି କରୁଥିଲେ, ସେତେବେଳେ ବୋଧିସତ୍ତ୍ୱ ମଗଧର ରାଜ ପରିବାରରେ ଜଣେ ସେବକ ଭାବରେ କାମ କରୁଥିଲେ । ମଗଧ ଓ ଅଙ୍ଗଦେଶ ମଧ୍ୟରେ ଚମ୍ପା ନାମକ ନଦୀ ପ୍ରବାହିତ ହେଉଥାଏ । ସେହି ନଦୀ ଗର୍ଭରେ ନାଗମାନଙ୍କର ରାଜ୍ୟ ଥାଏ । ସେ ରାଜ୍ୟର ରାଜା ଥା'ନ୍ତି ଚମ୍ପେୟ ।

ମଗଧ ଓ ଅଙ୍ଗଦେଶ ମଧ୍ୟରେ ବରାବର ଯୁଦ୍ଧ ଲାଗିଥାଏ । ଥରେ ମଗଧର ରାଜା ଅଙ୍ଗଦେଶର ରାଜାଙ୍କ ହାତରେ ଯୁଦ୍ଧରେ ହାରିଗଲେ । ସେ ନିଜ ଘୋଡ଼ା ଉପରେ ବସି ଯୁଦ୍ଧ କ୍ଷେତ୍ରରୁ ପଳାୟନ କରି ଚମ୍ପା ନଦୀ କୂଳରେ ପହଞ୍ଚିଲେ । ସେ ଭାବିଲେ ଶତ୍ରୁ ହାତରେ ମରିବା ଅପେକ୍ଷା ବରଂ ଆତ୍ମହତ୍ୟା କରିବା ଶ୍ରେୟସ୍କର । ମନରେ ଏହି ବିଚାର ରଖି ସେ ଘୋଡ଼ା ସହିତ ନଦୀ ମଧ୍ୟକୁ ଡେଇଁ ପଡ଼ିଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ଘୋଡ଼ା ମଗଧ ରାଜାଙ୍କ ସହିତ ନଦୀଗର୍ଭସ୍ଥିତ ନାଗରାଜାଙ୍କ ଦରବାରରେ ଯାଇ ପହଞ୍ଚିଲା ।

ନାଗରାଜା ନିଜ ସିଂହାସନରୁ ଉଠି ମଗଧ ରାଜାଙ୍କୁ ସ୍ୱାଗତ କଲେ ଓ ତାଙ୍କର ଆସିବାର କାରଣ ପଚାରିଲେ । ମଗଧ ରାଜା ତାଙ୍କର ସମସ୍ତ କାହାଣୀ ନାଗରାଜାଙ୍କୁ ଶୁଣାଇଲେ । ସବୁ ଶୁଣି ନାଗରାଜା କହିଲେ, "ଯାହାକିଛି ହୋଇଯାଇଛି ସେ ବିଷୟରେ ଆପଣ ଚିନ୍ତା କରନ୍ତୁ ନାହିଁ । ଏଥର ଅଙ୍ଗ ରାଜାଙ୍କ ସହ ଆପଣଙ୍କର ଯେଉଁ ଯୁଦ୍ଧ ହେବ ସେଥିରେ ଆପଣ ଯେପରି ଜିତିବେ ମୁଁ ତାର ବ୍ୟବସ୍ଥା କରିବି ।"

ନିଜ କଥା ଅନୁସାରେ ଯୁଦ୍ଧରେ ନାଗରାଜା ମଗଧ ରାଜାଙ୍କର ସହାୟତା କଲେ । ଯୁଦ୍ଧରେ ଅଙ୍ଗରାଜା ମରିଗଲେ ।

(ଜାତକ ଗଳ୍ପ)

ମଗଧରାଜା ଦୁଇ ରାଜ୍ୟକୁ ଏକତ୍ର କରି ଶାସନ କରିବାକୁ ଲାଗିଲେ । ସେହିଦିନଠାରୁ ଦୁଇ ରାଜାଙ୍କ ମଧ୍ୟରେ ଗଭୀର ବନ୍ଧୁତା ସ୍ଥାପିତ ହେଲା । ମଗଧରାଜା ବର୍ଷକୁ ଥରେ ସପରିବାରରେ ଚମ୍ପାନଦୀ କୂଳକୁ ଯାଉଥାନ୍ତି । ସେଦିନ ନାଗରାଜା ମଧ୍ୟ ପରିବାର ସହ ନଦୀ ଭିତରୁ ଉପରକୁ ଆସୁଥା'ନ୍ତି ଓ ମଗଧ ରାଜାଙ୍କୁ ବହୁତ କିଛି ଉପହାର ଦେଉଥାନ୍ତି ।



ମଗଧରାଜାଙ୍କ ପରିବାରର ଅନ୍ୟତମ ସେବକ ବୋଧିସତ୍ତ୍ୱ ସେସବୁ ବିଭବ ବରାବର ଦେଖୁଥା'ନ୍ତି । ନାଗରାଜାଙ୍କ ବ୍ୟବହାର ଓ ଗୃହଚଳନ ତାଙ୍କୁ ଏତେ ଭଲ ଲାଗିଲା ଯେ ସେ ସଦାବେଳେ ତାଙ୍କରି କଥା ଭାବନ୍ତି । ସୁତରାଂ ମୃତ୍ୟୁ ପରେ ସେ କିଛିଦିନ ଉତାରୁ ସେଇ ନାଗ ପରିବାରରେ ଜନ୍ମ ନେଲେ । କିନ୍ତୁ ପୂର୍ବଜନ୍ମରେ ସେ ଜଣେ ପୁଣ୍ୟାତ୍ମା ଥିଲେ ବୋଲି ନିଜର ସର୍ପଶରୀର ଦେଖିବା ମାତ୍ରେ ଘୃଣା କଲେ । ନାଗରାଜାର ବୈଭବରେ ମୁଗ୍ଧ ହୋଇଥିଲେ ବୋଲି ମଧ୍ୟ ବହୁତ ଅନୁତାପ କଲେ । ତେଣୁ ସେ ଭାବିଲେ ଯେ ବରଂ ଆତ୍ମହତ୍ୟା କରି ଏଇ ଜନ୍ମକୁ ଶେଷ କରିଦେବା ଭଲ । ସେଇ ସମୟରେ ସୁମନା ନାମକ ଏକ ନାଗ କନ୍ୟା ତାଙ୍କ ପାଖକୁ ଆସି ତାଙ୍କୁ ପ୍ରଣାମ କଲା ।

ସୁମନାକୁ ଦେଖିବା ମାତ୍ରେହିଁ ନାଗରାଜା ତା'ପ୍ରତି ଆକୃଷ୍ଟ ହେଲେ । ସେ ମୃତ୍ୟୁର ଇଚ୍ଛା ତ୍ୟାଗ କରି ବଞ୍ଚି ରହିବା ପାଇଁ ଚାହିଁଲେ । ପରେ ତାକୁ ସେ ବିବାହ କରି ନାଗଲୋକକୁ ଶାସନ କରି ରହିଲେ । ଅନେକ ଦିନ ରାଜ୍ୟ କରିବା ପରେ ତାଙ୍କ ମନରେ ଦେଖାଦେଲା ବୈରାଗ୍ୟ । ସେ ଉପବାସ, ଜପ ଆଦି ପୁଣ୍ୟ କର୍ମ କରିବା ପାଇଁ ଇଚ୍ଛା କଲେ ଓ ସେଥିପାଇଁ ନାଗଲୋକ ଛାଡ଼ି ମାନବ ଲୋକକୁ ଯିବାକୁ ଇଚ୍ଛାକଲେ ।

ଉପବାସ ଦିନ ସେ ଯାଇ ଗୋଟିଏ ଉଇ ହୁଙ୍କା ଚାରିପଟେ ଗୁଡ଼ାଇ ହୋଇ ଶୋଇ ରହନ୍ତି ଆଉ ଭାବନ୍ତି, "ମୋତେ କୌଣସି ଚିଲ୍ଲାଣ ପକ୍ଷୀ ଉଠାଇ ନିଅନ୍ତା କି କିଂବା



ଜଣେ ସାପୁଆ କେଳା ଏଠାରୁ ଧରି ନିଅନ୍ତା କି।" କିନ୍ତୁ ତାଙ୍କ ଇଚ୍ଛା ପୂରଣ ହେଲା ନାହିଁ। ହେଲା କ'ଣ ନା, ସେ ବାଟରେ ଯାଉଥିବା ବାଟୋଇମାନେ ଏପରି ଅବସ୍ଥାରେ ଶୋଇଥିବା ନାଗକୁ ଦେଖି ଫୁଲ ଚନ୍ଦନ ଦେଇ ପୂଜା କରିବାକୁ ଆରମ୍ଭ କଲେ। ଧୀରେ ଧୀରେ ଏକଥା ଚତୁର୍ଦ୍ଦିଗରେ ପ୍ରଚାର ହୋଇଗଲା। ଦୂର ସ୍ଥାନ ମାନଙ୍କରୁ ମଧ୍ୟ ଲୋକେ ନାଗଦେବତାଙ୍କୁ ପୂଜା କରିବାକୁ ଆସୁଥାନ୍ତି। କ୍ରମେ ଲୋକମାନଙ୍କ ଭକ୍ତି ବେଶି ବେଶି ବଢ଼ିଲା ଓ ସେମାନେ ଉଇହୁଙ୍କା ପାଖରେ ମନ୍ଦିରଟିଏ ତୋଳିଦେଲେ। ପ୍ରତିଦିନ ଅସଂଖ୍ୟ ଭକ୍ତସବୁ ସେଠାକୁ ଆସି ନାନା କିସମର ମାନସିକ କରିବାକୁ ଲାଗିଲେ।

ନାଗରାଜା ଉପବାସ ଦିନ ହୁଙ୍କା ଉପରେ ଥା'ନ୍ତି। ପ୍ରତ୍ୟେକ ମାସର କୃଷ୍ଣପକ୍ଷ ପ୍ରତିପଦରେ ପୁଣି ଘରକୁ ଫେରିଯା'ନ୍ତି। ଦିନେ ସୁମନା ନାଗରାଜାଙ୍କୁ ନିବେଦନ କରି କହିଲା, "ସ୍ୱାମୀ, ଆପଣ ବର୍ଷବର ମାନବ ଲୋକକୁ ଯାଉଛନ୍ତି। ଶୁଣାଯାଏ ସେମାନେ ସ୍ୱଭାବରେ କ୍ରୂର। ଯଦି ଆପଣଙ୍କର କିଛି କ୍ଷତି କରନ୍ତି ତ ଆମେ କିପରି ଜାଣିବୁ ?" ଏକଥା ଶୁଣି ନାଗରାଜା ସୁମନାକୁ ଗୋଟିଏ ସରୋବର ନିକଟକୁ ନେଇଯାଇ ବୁଝାଇ କହିଲେ, "ଏହି ସରୋବରର ପାଣିକୁ ଦେଖ। ଯଦି ମୋର କେହି କିଛି କ୍ଷତି କରେ ତ ଏହାର ପାଣି ଆବିଳ ହୋଇଯିବ। ଯଦି ଗରୁଡ଼ ପରି କେହି ମୋତେ ଉଠାଇ ନେଇଯାଏ ତ ଏହାର ଜଳ ଶୁଖିଯିବ। ଯଦି କୌଣସି ତାନ୍ତ୍ରିକ ମୋତେ ଧରି ନେଇ ଯାଏ ତ ଏହାର ଜଳ ରକ୍ତବର୍ଣ୍ଣ ହୋଇଯିବ।"

କିଛିଦିନ ପରେ। କାଶୀ ନଗରୀରୁ ସଦ୍ୟ ମନ୍ତ୍ରବିଦ୍ୟା ଶିକ୍ଷା କରି ଯୁବକଟିଏ ଘରକୁ ଫେରୁଥାଏ। ନାଗଟିଏ ଏପରି ହୁଙ୍କାରେ ଶୋଇଥିବାର ଦେଖି ତତ୍‌କ୍ଷଣାତ୍ ମନ୍ତ୍ର ଫୁଙ୍କି ତାହାକୁ ବଶ କରି ପେଡ଼ିରେ ପୂରାଇ ନେଇଗଲା ଓ ଗ୍ରାମରୁ ଗ୍ରାମାନ୍ତର ବୁଲି ବୁଲି ସାପଖେଳ ଦେଖାଇଲା। ସେ ଖେଳ ଦେଖି ଦେଖଣାହାରିମାନେ ଅତ୍ୟନ୍ତ ଖୁସି ହେଉଥା'ନ୍ତି ଓ ବହୁତ ପଇସା ଓ ଉପହାରମାନ ଦେଉଥା'ନ୍ତି। ଯୁବକଟି ମନରେ ଭାବିଲା, "ଏଇ ଗାଁ ମାନଙ୍କରେ

ଏତେ ପଇସା ମିଳୁଛି, ଆଉ ସହରକୁ ଗଲେ କେତେ ନ ମିଳବ ।" ଏକଥା ଭାବି ସେ ନାଗକୁ ନେଇ କାଶୀ ଗଲା ଓ ମାସଟିଏ ରାସ୍ତା ଚାଲି ଚାଲି ସେଠାରେ ପହଞ୍ଚିଲା ।

ପୂରାମାସ ଧରି ନାଗରାଜା ଉପବାସ କରିଥାଏ । ଯେତେ ଖାଦ୍ୟ ଯୁବକଟି ଦେଲେ ମଧ୍ୟ ଖାଏନାହିଁ । କାରଣ ସେ ଭାବିଲା, "ଯେତେଦିନ ମୁଁ ଖାଇପିଇ ଖେଳ ଦେଖାଉଥିବି ସେତେଦିନ ମୋତେ ଏଇ ପେଡ଼ି ମଧ୍ୟରେ ବନ୍ଦୀ ହୋଇ ରହିବାକୁ ହେବ ।"

ଯୁବକଟି କାଶୀ ନଗରୀର ସମୀପସ୍ଥ ଗ୍ରାମ ମାନଙ୍କରେ ଖେଳ ଦେଖାଇଲା ଓ ସେଠାକାର ଜନତାଙ୍କ ପାଖରୁ ବିପୁଳ ଧନ ପାଇଲା । ସାପର ମନୋରଞ୍ଜକ ଖେଳ ବିଷୟ ଶୀଘ୍ର ଯାଇ କାଶୀରାଜାଙ୍କ କାନରେ ପଡ଼ିଲା । ସେ ଯୁବକକୁ ଡକାଇ ପଠାଇଲେ ନବରରେ ଖେଳ ଦେଖାଇବାକୁ ।

ଇତିମଧ୍ୟରେ ମାସେ କାଳ ସ୍ୱାମୀ ନ ଫେରିବାରୁ ସୁମନା ମନରେ ଭୟ ହେଲା କି ସ୍ୱାମୀଙ୍କ ଉପରେ ହୁଏତ କିଛି ବିପଦ ପଡ଼ିଛି । ଏକଥା ଜାଣିବାକୁ ସେ ସରୋବର ନିକଟରେ ପହଞ୍ଚି ଦେଖିଲା ପାଣି ରକ୍ତବର୍ଣ୍ଣ ହୋଇ ଯାଇଛି । ସୁମନା ଜାଣି ପାରିଲା ଯେ କୌଣସି ତାନ୍ତ୍ରିକ ତା' ସ୍ୱାମୀକୁ ଧରି ନେଇଛି । ସେ ସ୍ୱାମୀକୁ ଖୋଜିବା ପାଇଁ ଶୀଘ୍ର ଯାଇ କାଶୀ ନଗରୀରେ ପହଞ୍ଚିଲା ।

କାଶୀରେ ପହଞ୍ଚି ସୁମନା ଦେଖିଲା ସେଠାରେ ସାପଖେଳ ହେଉଛି । ରାଜା ଓ



ଅପେକ୍ଷା ଭୂନା ତେଣେ ଦେଖୁଛନ୍ତି । ନାଗରଜା ସୁନନ୍ଦାକୁ ଦେଖିବାମାତ୍ରେ ଲଜ୍ଜାରେ ପେଡ଼ି ଭିତରକୁ ଚାଲିଗଲା । ସୁନନ୍ଦା ମଣିଷ ରୂପ ନେଇ ରାଜାଙ୍କ ନିକଟକୁ ଗଲା ଓ ହାତଯୋଡ଼ି ନିବେଦନ କଲା, "ମହାରାଜ, ଦୟାକରି ମୋର ସ୍ୱାମୀଙ୍କୁ ଫେରାଇ ଦିଅନ୍ତୁ ।"

ଇତିମଧ୍ୟରେ ନାଗରଜା ପେଡ଼ି ଭିତରୁ ଧୀରେ ଧୀରେ ବାହାରି ଆସିଲା ଓ ଦେଖୁ ଦେଖୁ ଏକ ସୁନ୍ଦର ଯୁବକ ହୋଇଗଲା । କାଶୀରଜା ସେଇ ନାଗଦମ୍ପତିଙ୍କ ଉପରେ ବହୁତ ଖୁସି ହେଲେ ।

ରଜା ସେ ଦୁହିଁଙ୍କୁ ସପ୍ତାହେ କାଳ ନଗରରେ ରଜଅତିଥି କରି ରଖିଲେ । ତା'ପରେ ନାଗରଜାଙ୍କ ନିମନ୍ତ୍ରଣ କ୍ରମେ ସେ ସପରିବାରରେ ନାଗଲୋକ ଭ୍ରମଣରେ ଗଲେ ।

ନାଗଲୋକର ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ ଓ ବୈଭବ ଦେଖି କାଶୀରଜା ଆଶ୍ଚର୍ଯ୍ୟ ହୋଇଗଲେ । କ୍ଷଣକ ପାଇଁ ତାଙ୍କ ମନରେ ଇଚ୍ଛା ହେଲା ସେହି ସବୁ ଐଶ୍ୱର୍ଯ୍ୟ ପ୍ରାପ୍ତ କରିବା ପାଇଁ । ତା'ପରେ ସେ ନାଗରଜାଙ୍କୁ ପଚାରିଲେ, "ଏତେ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ଆପଣ କାହିଁ ଭଲି ଦୁଃଖରେ ଯାଇ ପଡ଼ି ରହୁଥିଲେ ?"

ନାଗରଜା କହିଲେ, "ରଜନ୍, ଏଠାରେ ଯେତେ ଐଶ୍ୱର୍ଯ୍ୟ ଥାଉନା କାହିଁକି ଜୀବ ଜନ୍ମରୁ ମୁକ୍ତି ପାଇବା ପାଇଁ ମାନବ ଲୋକହିଁ ସର୍ବଶ୍ରେଷ୍ଠ ସ୍ଥାନ । ସେଥିପାଇଁ ମୁଁ ସଦା ବେଳେ ପୃଥିବୀ ଉପରେ ଯାଇ ରହୁଥିଲି । କାରଣ ନାଗଲୋକର ଏସବୁ ବିଭବ ମୋତେ କ୍ଷଣିକ ସୁଖରୂପେ ପ୍ରତୀତ ହୁଏ ।

କାଶୀରଜା ଏ ଉତ୍ତର ଶୁଣି ଅତି ଖୁସି ହେଲେ ଓ ନିଜର ମନୁଷ୍ୟ ଜନ୍ମ ଯୋଗୁ ସେ ଗର୍ବ ଅନୁଭବ କଲେ । ତା'ପରେ ସେ ନିଜ ନଗରକୁ ଫେରି ଆସିଲେ । ଫେରିବା ବେଳେ ନାଗରଜା ତାଙ୍କୁ ବହୁମୂଲ୍ୟର ଅନେକ ଉପହାର ଦେଇ ଖୁସି କରାଇଥିଲେ ।





ଭାରତ କାହାଣୀ

# କୃଷ୍ଣା କୁମାରୀ

ରାଜସ୍ଥାନରେ ଉଦୟପୁର ଏକଦା ସମୃଦ୍ଧିଶାଳୀ ରାଜ୍ୟ ଥିଲା । ସେଠାକାର ଶାସକ ମହାରାଣା ନାମରେ ଖ୍ୟାତ ଥିଲେ । ଏଠାରେ ମହାରାଣା ଭୀମ-ସିଂହଙ୍କ ସମୟର ଘଟଣାଟିଏ କୁହା-ଯାଉଛି । ସେତେବେଳେ ଉଦୟପୁର ଏକ ସୁନ୍ଦର ନଗରୀ ।

ସେହି ସୁନ୍ଦର ନଗରୀ ତା'ର ସୁନ୍ଦରୀ ରାଜକୁମାରୀ କୃଷ୍ଣାକୁମାରୀଙ୍କୁ ନେଇ ଗର୍ବ କରୁଥିଲା । ମହାରାଣାଙ୍କର ଏହି କନ୍ୟାଙ୍କୁ ଲୋକେ "ରାଜସ୍ଥାନର ପୁଷ୍ପ" ବୋଲି କହୁଥିଲେ । ତାଙ୍କର ସରଳ ସ୍ୱଭାବ ଯୋଗୁଁ ସମସ୍ତେ ତାଙ୍କୁ ଭଲ ପାଉଥିଲେ ।





ଜୟପୁରର ରାଜା ଜଗତ ସିଂହ ମହାରାଣାଙ୍କ ନିକଟକୁ ରାଜକନ୍ୟା କୃଷ୍ଣାକୁମାରୀଙ୍କୁ ସେ ବିବାହ କରିବାର ପ୍ରସ୍ତାବ ପଠାଇଲେ । ମହାରାଣା ଦୂତକୁ ଯଥୋଚିତ ସମ୍ମାନ ଦେଇ କେଇଦିନ ପରେ ତାଙ୍କ ସିଦ୍ଧାନ୍ତ ଜଣାଇବେ ବୋଲି ପ୍ରତିଶ୍ରୁତି ଦେଲେ ।



ଏହାର ଅଳ୍ପ ଦିନ ପରେ ଜୟପୁରର ରାଜା ଜଗତସିଂହଙ୍କ ସହ ମାରୱାରର ରାଜା ମାନସିଂହଙ୍କର ଯୁଦ୍ଧ ହେଲା । ମାନସିଂହ ଜଗତସିଂହଙ୍କୁ ହରାଇ ଦେଇଛନ୍ତି ବୋଲି ଦାବି କଲେ । ଜଗତସିଂହ ସେକଥା ସ୍ୱୀକାର କଲେ ନାହିଁ । ଦୁହେଁ ପରସ୍ପର ଭୀଷଣ ଶତ୍ରୁ ହୋଇ ରହିଲେ ।

ଯୁଦ୍ଧ ପରେ ପରେ ମାନସିଂହଙ୍କର ଦୂତ ଆସି ମହାରାଣାଙ୍କୁ ଦେଖା କରି କହିଲା, "ଆମ ରାଜା ମାନସିଂହ କୃଷ୍ଣାକୁମାରୀଙ୍କୁ ବିବାହ କରିବାକୁ ଇଚ୍ଛୁକ । ପରାଜିତ ଜଗତସିଂହଙ୍କୁ କନ୍ୟାଦାନ ନକରି ବିଜୟୀ ମାନସିଂହଙ୍କୁ କନ୍ୟାଦାନ କରିବା ଆପଣଙ୍କର ଉଚିତ ହେବ ।"





ମହାରାଣା ଓ ମହାରାଣୀ ବଡ଼ ଚିନ୍ତାରେ ପଡ଼ିଲେ । ଉଭୟ ଜଗତସିଂହ ଓ ମାନସିଂହ ଖୁବ୍ କ୍ଷମତାଶାଳୀ ପ୍ରତିବେଶୀ ଥିଲେ । ଜଣକର ପ୍ରସ୍ତାବ ପ୍ରତ୍ୟାଖାନ କଲେ ଅନ୍ୟ ଜଣକ ଉଦୟପୁରର ଶତ୍ରୁତା କରିବହିଁ କରିବ । ସେତେବେଳେ ଆକ୍ରମଣ ପ୍ରତିରୋଧ କଲାଭଳି ବଳ ଉଦୟପୁରର ନଥିଲା ।

ମାରବାଡର ରାଜା ମାନସିଂହଙ୍କର ନବାବ୍ ଅମୀର ଖାଁ ନାମକ ଜଣେ ଦୋସ୍ତ୍ ଥିଲେ । ଦୁହେଁ ଏକତ୍ର ମଉଜ୍ ମଜ୍‌ଲିସ୍ କରୁଥିଲେ । ଉକ୍ତ ନବାବ୍ ମାନସିଂହଙ୍କୁ ବୁଝାଇଲେ କି କୃଷ୍ଣା-କୁମାରୀକୁ ଯଦି ସେ ବିଭା ହୋଇ ନପାରିବେ, ତେବେ ତାଙ୍କ ସମ୍ମାନ ମାଟି ହେବ ।





ମାନସିଂହଙ୍କ ତରଫରୁ ଏହି ନବାବ୍ ଯାଇ ମହାରାଣାଙ୍କୁ କହିଲେ, "ଆମ ମାନସିଂହ ଯଦି କୃଷ୍ଣାକୁମାରୀଙ୍କୁ ବିଭା ହୋଇ ନପାରିବେ, ତେବେ ଉଦୟପୁର ଧ୍ୱଂସ ହେବ । ରାଜକନ୍ୟା ମରିଗଲେ ଆମର ଶୋଚନା ନାହିଁ, କିନ୍ତୁ ସେ ଯଦି ଜଗତସିଂହଙ୍କୁ ବିଭା ହେବେ, ତେବେ କଥା ସରିଲା ।"

ମହାରାଣା ଓ ମହାରାଣୀ ଯେଉଁ ସଙ୍କଟରେ ପଡ଼ିଥିଲେ, ସେକଥା କୃଷ୍ଣା-କୁମାରୀ ଶୁଣିଲେ । ତାଙ୍କ ମୁହଁରୁ ହସ ଲିଭିଗଲା । ତାଙ୍କ ପାଇଁ ଉଦୟପୁର ଉପରେ ବିପଦ ଘୋଟି ଆସିବ, ସେ ଏହା ମୋଟେ ଚାହୁଁ ନଥିଲେ । ବାପା ମା ତାଙ୍କ ସହ କଥା କହିବା ବନ୍ଦ କରି ଦେଇଥିଲେ । ତାଙ୍କର ଦୋଷ କ'ଣ ?





ତେଣେ ଉଭୟ ଉଦୟପୁର ଓ ମାରଓ୍ୱାରର ସୈନ୍ୟବାହିନୀ ଉଦୟପୁର ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିଲେ । ଦୁଇ ପ୍ରତିଦ୍ୱନ୍ଦ୍ୱୀ ରାଜା କୃଷ୍ଣାକୁମାରୀଙ୍କୁ ଜବରଦସ୍ତ ନେଇଯିବାର ଯୋଜନା କରୁଥିଲେ । ଉଦୟପୁର ନଗରୀ ବ୍ୟାପି ଆତଙ୍କ ଘୋଟି ଆସୁଥିଲା ।

ଯେବେ ଗହନ ରାତିରେ ରାଜକନ୍ୟା ଦେଖିଲେ, କୋଷ ମୁକ୍ତ କରି କେହି ଜଣେ ତାଙ୍କ ପ୍ରକୋଷ୍ଠରେ ପ୍ରବେଶ କରୁଛି । "କାକା" ସେ ପାଟି କଲେ । ମହାରାଣାଙ୍କ ସମ୍ପର୍କୀୟ ଭାଇ ଜବାନ୍ ଦାସଙ୍କ ହାତରୁ ଅସି ଖସି ପଡ଼ିଲା । ସେ ପଳାଇଗଲେ ।






ରାଜକନ୍ୟା ବୁଝିଲେ ଜବାନ୍‌ଦାସ ତାଙ୍କୁ ହତ୍ୟା କରିବାର ଦାୟିତ୍ୱ ନେଇଥିଲେ । କାରଣ ତାଙ୍କ ମୃତ୍ୟୁହିଁ ଉଦୟପୁରକୁ ରକ୍ଷା କରି ପାରିବ । ସେ ସଖୀମାନଙ୍କୁ ବିଷ ଆଣିବା ପାଇଁ ନିର୍ଦ୍ଦେଶ ଦେଲେ । କରୁଣ ହସରେ ଅନ୍ୟ ସମସ୍ତଙ୍କୁ ଚାହିଁ ନେଇ ସେ ବିଷପାନ କରି ଢଳି ପଡ଼ିଲେ ।



# ଭାଗ୍ୟଚକ୍ର କଟିବ

ବାସ୍ରା ନଗରୀରେ ଅବ୍ଦୁଲ ରଜାକ୍ ନାମରେ ଜଣେ ସୌଦାଗର ଥାଏ । ସେ ଦୂର ଦୂରାନ୍ତରକୁ ସମୁଦ୍ର ଯାତ୍ରା କରି ବାଣିଜ୍ୟ କରୁଥାଏ ।

ଥରେ ସେ ବାଣିଜ୍ୟ କରିବାକୁ ଯାଇ ଶ୍ୱେତଦ୍ୱୀପରେ ପହଞ୍ଚିଲା । ତା' ଜିନିଷଗୁଡ଼ିକ ସେଠାରେ ସମସ୍ତେ ପସନ୍ଦ କଲେ । କମ୍ ସମୟରେ ସବୁ ବିକ୍ରୀ ହୋଇଗଲା ଓ ସେ ବହୁତ ଲାଭ ପାଇଲା । ସେ ଦେଶର ରାଜା ସ୍ୱୟଂ ତା'ଠାରୁ ବହୁତ ଜିନିଷ କିଣିଲେ ।

ବାଣିଜ୍ୟ କରିବା ଯୋଗୁ ରଜାକ୍ ଅନେକ ଦ୍ୱୀପ ବୁଲିଥିଲା । ରାଜା ତାକୁ ନିମନ୍ତ୍ରଣ କଲେ ଓ ତା'ଠାରୁ ତା'ର ଅନେକ ଅନୁଭୂତି ସବୁ ଶୁଣିଲେ । ରାଜା ତାକୁ ଖୁବ୍ ଭଲ ପାଇଲେ ଓ ସେଠାରେ ଆଉ କିଛିଦିନ ରହିବାକୁ ଅନୁରୋଧ କଲେ । ରଜାକ୍ ରାଜାଙ୍କର ରାଜଅତିଥି ହୋଇ ଅନେକ ଦିନ ସେଠି ରହିଲା । ରାଜାଙ୍କ ସହ ତା'ର ବନ୍ଧୁତା ଅଧିକରୁ ଅଧିକ ଘନିଷ୍ଠ ହୋଇ ଉଠିଲା । ସେ ରାଜାଙ୍କ ସହିତ କିଛିଦିନ ରହୁ ରହୁ କିଛି ବର୍ଷ ମଧ୍ୟ ରହିଗଲା ।

ଇତିମଧ୍ୟରେ ରଜାକ୍‌ର ସ୍ତ୍ରୀ ସ୍ୱାମୀଙ୍କର ଫେରିବା ପଥକୁ ଚାହିଁ ଥାଏ; ସେ ନ ଆସିବାରୁ ତା' ମନରେ ନାନା ସନ୍ଦେହ ଦେଖା ଦେଲା । ଶେଷରେ ସେ ତାଙ୍କର ଦୁଇ ଯମଜପୁତ୍ରଙ୍କୁ ସାଙ୍ଗରେ ନେଇ ଶ୍ୱେତଦ୍ୱୀପ ଅଭିମୁଖେ ଚାଲିଲା । କେତେଦିନ ପରେ ସେମାନେ ଶ୍ୱେତ ଦ୍ୱୀପର ସନ୍ନିକଟ ଏକ ଦ୍ୱୀପର ବନ୍ଦରରେ ଯାଇ ପହଞ୍ଚିଲେ । ସେଠାରେ ପଚାରି ବୁଝିଲେ ରାତିରେ ଶ୍ୱେତଦ୍ୱୀପରୁ ଏକ ଜାହାଜ ଆସିବାର ଅଛି । ଜାହାଜ ଆସିବା ପରେ ସେ ତା'ର ଦୁଇପୁତ୍ରକୁ ପିତାଙ୍କ ବିଷୟରେ ଖବର ସଂଗ୍ରହ କରିବା ପାଇଁ ପଠାଇଲା । ଦୁଇଭାଇ ସିଧା ଜାହାଜ ଭିତରକୁ ଚାଲିଗଲେ । ସେଇ ଜାହାଜଟି ଥିଲା ତାଙ୍କର ବାପାଙ୍କର । ସେ ରାଜାଙ୍କ ପାଖରୁ ବିଦାୟ



ନେଇ ଘରକୁ ଫେରୁଥିଲେ । ସେମାନେ ଜାହାଜ ଭିତରେ ଥିବାବେଳେ ରଜାକ୍‌ର ଗୋଟିଏ ଟଙ୍କାସୁନାପୂର୍ଣ୍ଣ ଥଳୀ ହଠାତ୍ ଚୋରି ହୋଇଯାଇଥାଏ । ଜଣେ ଖଲାସୀ ତାକୁ ଚୋରି କରିଥାଏ । ତେଣୁ ସେ ମିଛରେ ରଜାକ୍‌କୁ କହିଲା କି ଏଇ ଦୁଇ ଭାଇ ସେ ଥଳୀ ଚୋରି କରିବାର ଦେଖିଛି । ଏକଥା ଶୁଣି ରଜାକ୍ ରାଗିଗଲା ଓ କିଛି ନଦେଖି ଓ ବିଚାର ନକରି ଆଦେଶ ଦେଲା ଦୁଇଭାଇଙ୍କୁ ସମୁଦ୍ରକୁ ଫିଙ୍ଗି ଦେବାକୁ । ସଙ୍ଗେ ସଙ୍ଗେ ଆଦେଶ କାର୍ଯ୍ୟକାରୀ ହେଲା ।

ଏଣେ ରଜାକର ପତ୍ନୀ ପୁଅମାନଙ୍କୁ ଫେରିବାର ନଦେଖି ଅତ୍ୟନ୍ତ ଚିନ୍ତିତା ହୋଇ ଡଙ୍ଗାଟିଏ ନେଇ ଜାହାଜ ପାଖକୁ ଗଲା । ସେଠାରେ ହଠାତ୍ ରଜାକ୍‌କୁ ଦେଖି ଦୁହେଁ ଖୁବ୍ ଆନନ୍ଦିତ ହେଲେ । କିନ୍ତୁ ପୁଅମାନଙ୍କ କଥା ଶୁଣି ଦୁହେଁ ଅତିଶୟ ଦୁଃଖିତ ହେଲେ । ସେତେବେଳେ ଆଉ କିଛି ଉପାୟ ନଥିଲା । ତଥାପି ଦୁହିଁଙ୍କର ଆଶା ଥିଲା ଯେ ଦୁଇ ପୁଅ ହୁଏତ କମିତ ହେଲେ ବଞ୍ଚି ଯାଇଥିବେ । ତା' ପରେ ସେମାନେ ବହୁତ ଖୋଜାଖୋଜି କଲେ ଓ ପୁଅମାନଙ୍କୁ ନପାଇ ଦୁଃଖିତ ହୋଇ ଦେଶକୁ ଲେଉଟି ଆସିଲେ ।

ଅନେକ ଦିନ ବିତିଗଲା । ରଜାକ୍ ଓ ତା'ର ସ୍ତ୍ରୀ କୌଣସି ଏକ ପିଲାକୁ ପୁଅ କରି ରଖିବା ପାଇଁ ମନସ୍ଥ କଲେ । ଦିନେ ରଜାକ୍ ଗୋଟିଏ ହାଟକୁ ଗଲା ପିଲା କିଣିବା ପାଇଁ । ସେଇଟି ଥିଲା କ୍ରୀତଦାସ ମାନଙ୍କର ହାଟ । ସେଠାରେ ସେ ବାଛି ବାଛି ଏକ ସୁନ୍ଦର ଯୁବକକୁ କିଣି ଘରକୁ ନେଇଗଲା । ରଜାକ୍‌ର ପତ୍ନୀ ତାକୁ ଦେଖିବାମାତ୍ରେ ଚିହ୍ନିଲା ଯେ ସେ ହଜିଥିବା ପୁଅରୁ ଜଣେ । ସେ ଆନନ୍ଦରେ ପୁଅକୁ ଆଲିଙ୍ଗନ କରୁ କରୁ ସ୍ୱାମୀକୁ କହିଲା, "କ'ଣ ତମେ ଚିହ୍ନି ପାରୁନାହଁ । ସେ ଆମ ସାନପୁଅ ସେରାଜ୍ ।"

ରଜାକ୍‌ର ଆନନ୍ଦର ସୀମା ନଥିଲା । ସେ ସେରାଜକୁ ଅତି ସ୍ନେହ ଓ ଆନନ୍ଦରେ ଆଲିଙ୍ଗନ କଲା ଓ ବଡ଼ପୁଅ ବିଷୟରେ ତାକୁ ପଚାରିଲା । ସେ କିନ୍ତୁ ବଡ଼ ଭାଇର ଖବର କିଛି ରଖି ନଥିଲା । ଯେତେବେଳେ ସେ ସମୁଦ୍ରରେ ପଡ଼ି ଛଟପଟ ହେଉଥିଲା ସେତେବେଳେ ଜଣେ ଡଙ୍ଗାବାଲା ତାକୁ ଉଠାଇ

ନେଇ ଏକ କ୍ରୀତଦାସର ବେପାରୀକୁ ବିକ୍ରୀ କରିଦେଲା । ତା' ପରେ ଆଜିପର୍ଯ୍ୟନ୍ତ ସେ ଚାକର ହୋଇ କେତେ କଷ୍ଟ ପାଉଛି ସେସବୁ ବର୍ଣ୍ଣନା କରିବାବେଳେ ରଜାକ୍ ଓ ତା'ର ପତ୍ନୀଙ୍କ ଆଖିରେ ଲୁହ ଭରିଗଲା ।

ଏହି ଘଟଣାର ଛ ମାସ ପରେ ପିତା ଓ ପୁତ୍ର ଗୋଟିଏ ଛୋଟ ଜାହାଜରେ କିଛି ଜିନିଷ ନେଇ ବିଦେଶ ବାହାରିଲେ । କିଛି ଦିନ ପରେ ଯାଇ ଏକ ନୂଆ ଦ୍ୱୀପରେ ପହଞ୍ଚିଲେ । ସେରାଜ୍ କିଛି ଭେଟି ନେଇ ଦ୍ୱୀପର ରାଜାଙ୍କ ପାଖକୁ ଗଲା । ରାଜା ସେଗୁଡ଼ିକୁ ପାଇ ଖୁବ୍ ଖୁସି ହେଲେ ଓ ସେରାଜକୁ ରାଜଅତିଥି କରି ରଖାଇଲେ । କ୍ରମେ ରାଜାଙ୍କର ସେରାଜ ସହିତ ଘନିଷ୍ଠତା ବଢ଼ିବାକୁ ଲାଗିଲା । ରାଜମହଲର ଅନେକ ଲୋକ ଏସବୁ ଦେଖି ଈର୍ଷାନ୍ୱିତ ହୋଇ ସେରାଜର କ୍ଷତି କରିବାକୁ ଚାହିଁଲେ ।

ଦିନେ ହଠାତ୍ ରାତିରେ ରାଜା ଅସୁସ୍ଥ ହୋଇ ପଡ଼ିଲେ । ସେରାଜ ଆଗରୁ ଖବର ନେଇ ଜାଣିଥିଲା ଯେ ସେ ରାଜ୍ୟରେ କେତେକ ଲୋକ ଗୋପନରେ ଦଳ ସୃଷ୍ଟି କରି ରାଜାଙ୍କୁ ସିଂହାସନରୁ ହଟାଇବାକୁ ଚାହାନ୍ତି । ସେଥିପାଇଁ ରାଜାଙ୍କ ଜୀବନ ସର୍ବଦା ବିପଦପୂର୍ଣ୍ଣ ଥିଲା ।

ଏସବୁ ଭାବି ସାରା ରାତି ସେରାଜ ହାତରେ ତଲୱାର ନେଇ ରାଜାଙ୍କୁ ପହରା ଦେବାକୁ ଲାଗିଲା । ସକାଳେ ରାଜା ଟିକିଏ ସୁସ୍ଥ ଅନୁଭବ କଲେ ।



ସେଇ କୁଚକ୍ରୀ ଲୋକମାନଙ୍କ ମଧ୍ୟରୁ କେତେଜଣ ସକାଳୁ ଯାଇ ରାଜାଙ୍କୁ କହିଲେ, "ମହାରାଜ, କାଲି ରାତିରେ, ତଲୱାର ଧରି ସୌଦାଗର ପୁତ୍ର ଆପଣଙ୍କ ଶୟନ କକ୍ଷ ଆଡ଼କୁ ଯାଉଥିବାର ଆମେ ଦେଖିଛୁ । ସେ ନିଶ୍ଚୟ ଆପଣଙ୍କୁ ହତ୍ୟା କରିବାକୁହିଁ ଯାଉଥିଲା । ଆପଣ ତୁରନ୍ତ ସେ ଦୁଷ୍ଟକୁ ଫାଶୀ ଦେଇ ଦିଅନ୍ତୁ । ନଚେତ୍ କେବେ ହେଲେ ସେ ଆପଣଙ୍କ ଜୀବନ ନେଇନେବ । କେତେଦିନ ଧରି ଆମେ ଏକଥା ଭାବୁଥିଲୁ ; କିନ୍ତୁ କାଲି ରାତିରେ ଆମେ ନିଜ ଆଖିରେ ଦେଖିଲୁ । ରାଜ୍ୟର ଲୋଭରେ ଯିଏ କେହି ଯାହା ବି କରିପାରେ । ଆପଣ ତାକୁ ସିନା

ବିଶ୍ୱାସ କରନ୍ତି, ସେ କିନ୍ତୁ ବିଶ୍ୱାସଘାତକତା କଲା ରାଜ୍ୟ ପାଇଁ । ଏପରି ଲୋକକୁ କ୍ଷମା ଦେବା ଉଚିତ ନୁହେଁ । ପରେ ବିପଦ ସୃଷ୍ଟି କରିବ ।"

ରାଜା କହିଲେ, "ହଠାତ୍ ଉପରେ ମୁଁ କିଛି କରିବି ନାହିଁ । ପ୍ରଥମେ ତାକୁ ଜେଲ୍‌ରେ ରଖ । ପରେ ମୁଁ ଯାହା ବିଚାର କରିବି ।"

ଏ ଖବର ଶୁଣି ସୌଦାଗର ରଜାକ୍ ବିଚାରି ରାଜାଙ୍କ ପାଖକୁ ଦୌଡ଼ିଲା । ରାଜାଙ୍କୁ ସାକ୍ଷାତ କରି ସେ ନିବେଦନ କଲା, "ପ୍ରଭୁ ! ଆପଣ ଭଲ ଭାବରେ ବୁଝି ଦେଖନ୍ତୁ ସେ ଅପରାଧୀ କି ନୁହେଁ । ହଠାତ୍ ଉପରେ କିଛି ନିର୍ଣ୍ଣୟ କରିବା ଆଦୌ ଉଚିତ ନୁହେ । ମୁଁ ସେପରି ଏକ କାମ କରି ସାରା ଜୀବନ ଦୁଃଖ ଓ ଅନୁତାପରେ କାନ୍ଦୁଛି ।"

ଏକଥା ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁମର ଅଭିଜ୍ଞତା କ'ଣ ବର୍ଣ୍ଣନା କର ।"

ସୌଦାଗର କହିଲା, "ଆପଣ କ'ଣ ବିଶ୍ୱାସ କରିବେ କି ମୁଁ ଅନ୍ୟ କଥାରେ ପଡ଼ି ମୋର ନିଜର ଦୁଇ ପୁଅଙ୍କୁ ସମୁଦ୍ରରେ ଫିଙ୍ଗି ଦେଇଥିଲି ।" ଏକଥା କହି ସେ ସାରା ବୃତ୍ତାନ୍ତ ବର୍ଣ୍ଣନା କଲେ ।

ରାଜା ଖୁସିରେ ଚିତ୍କାର କରି ଉଠି କହିଲେ, "ବାବା, ତେବେ ମୁଁ ଯାହାକୁ ଜେଲ୍‌ରେ ରଖିଛି ତେବେ କ'ଣ ସେ ମୋହର ଜ୍ୟେଷ୍ଠ ଭାଇ ?"

ବଡ଼ପୁଅ ବଞ୍ଚିଥିବାର ଦେଖି ରଜାକ୍ ଖୁବ୍ ଖୁସି ହେଲା । ସଙ୍ଗେ ସଙ୍ଗେ ରାଜା ସାନ ଭାଇକୁ ବନ୍ଦୀଘରୁ ମୁକ୍ତ କରି ଆଣିଲେ ।

କଥା କ'ଣ କି ସମୁଦ୍ରରେ ପଡ଼ିଲା ପରେ ବଡ଼ପୁଅ ଗୋଟିଏ କାଠକୁ ଧରି ଭାସି ଭାସି ଆସି ଏ ଦ୍ୱୀପରେ ପହଞ୍ଚିଲା । ଏଠାକାର ବୃଦ୍ଧ ରାଜା ନିଃସନ୍ତାନ ଥିଲେ । ସେ ତାକୁ ପୁତ୍ର ପରି ରଖିଲେ ଓ ମୃତ୍ୟୁ ସମୟରେ ତାଙ୍କ ରାଜ୍ୟର ଉତ୍ତରାଧିକାରୀ ଭାବରେ ତାକୁ ବାଛିଲେ ଓ ଘୋଷଣା କଲେ । ତେଣୁ ସେ କାଳକ୍ରମେ ରାଜା ହେଲା ।

ଏବେ ସମସ୍ତଙ୍କର ଏ ଅପୂର୍ବ ମିଳନ ପରେ ରଜାକ୍ ନିଜ ଦେଶକୁ ଲେଉଟି ଆସି ପତ୍ନୀ ଓ ପୁତ୍ରମାନଙ୍କ ସହ ଆନନ୍ଦରେ ରହିଲା ।





# ଅଭିଜ୍ଞତା

ତପନ ଗ୍ରାମରେ ରହୁଥିଲେ ମଧ୍ୟ ନିକଟସ୍ଥ ସହରରେ ଛୋଟ ଚାକିରିଟିଏ କରି ଚଳୁଥାଏ। ପିଲାକାଳରୁ ମା'ବାପ ମରିଯିବାରୁ ଖୁଡ଼ୀ ତାକୁ ମଣିଷ କରିଥାଏ। ଘରେ ଖୁଡ଼ୀ ପୁତୁରା ଓ ଖୁଡ଼ୀର ଝିଅ ଭଉଣୀଟିଏ ଥାଏ। କିଛି ଦିନ ଉତ୍ତାରୁ ଭଉଣୀଟି ବିଭା ହୋଇଗଲା। ଘରେ ଖୁଡ଼ୀ ମୀନାକ୍ଷୀ ଏକଲା ପଡ଼ିବାରୁ ତପନକୁ ବିବାହ କରିବା ପାଇଁ କନ୍ୟା ଖୋଜିଲେ।

ପଡ଼ିଶା ଘରର ଝିଅଟିଏ, ନାମ ଲାବଣ୍ୟ। ଦେଖିବାକୁ ଖୁବ୍ ସୁନ୍ଦରୀ। କିନ୍ତୁ ମା'ବାପ ଗରିବ ବୋଲି ତପନ ସହିତ ତାକୁ ବିବାହ ଦେଲେ। ତପନ ଦେଖିବାକୁ ସୁନ୍ଦର ନୁହେଁ ଅବା ବଡ଼ ଚାକିରି ମଧ୍ୟ କରିନାହିଁ। ସେଥିପାଇଁ ଲାବଣ୍ୟ ମନରେ ଆଦୌ ଶାନ୍ତି ନଥାଏ। ଖୁଡ଼ୀଶାଶୁ ମୀନାକ୍ଷୀ ଯୌତୁକ ଦାବୀ ନ କରିହିଁ କନ୍ୟାଟିକୁ ପସନ୍ଦ କରିଥିଲେ। କିନ୍ତୁ ଲାବଣ୍ୟ ମନରେ ଦିବାସ୍ୱପ୍ନ ଥିଲା କି ତା'ର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଜଣେ ବଡ଼ ଜମିଦାର ପୁଅ ତାକୁ ବିବାହ କରିବେ।

ମୀନାକ୍ଷୀଙ୍କର ପସନ୍ଦ ଯୋଗୁ ବିବାହ ହୋଇଥିଲା ବୋଲି ଶାଶୁଘରକୁ ଆସିବା ମାତ୍ରେ ଲାବଣ୍ୟ ମୀନାକ୍ଷୀଙ୍କ ପ୍ରତି ଘୃଣାଭାବ ରଖି ଖରାପ ବ୍ୟବହାର କରିବାକୁ ଲାଗିଲା। ଶାଶୁଘର ଆସିବାର ମାସେ ନ ପୁରୁଣୁ ଦିନେ ଲାବଣ୍ୟ ତପନକୁ କହିଲା, "ଆଜିକାଲି ନିଜ ଶାଶୁକୁ ତ କେହି ସେବା କରୁ ନାହାନ୍ତି। ପୁଣି ଖୁଡ଼ୀ-ଶାଶୁଙ୍କ ସେବା କିଏ କରିବ? ଆହୁରି ମଧ୍ୟ ତମର ତ ଦରମା ଏତେ କମ୍। ପୁଣି ଅଧିକା ଜଣେ ମଣିଷକୁ ପୋଷିବା କ'ଣ ଦରକାର। ଖୁଡ଼ୀଙ୍କୁ କୁହ ତାଙ୍କ ଝିଅ ଘରେ ଯାଇ ରହନ୍ତୁ।"



ପ୍ରଥମେ ଯେଉଁଦିନ ତପନ ଏକଥା ଶୁଣିଲା, ସେଦିନ ତାକୁ ଆଶ୍ଚର୍ଯ୍ୟ ଲାଗିଲେ ବି ସେ ଏହାକୁ ଇଚ୍ଛା କରି ଥଟ୍ଟା ହିସାବରେ ନେଲା ଓ ହସିଦେଲା । କେଇଦିନ ପରେ ଲାବଣ୍ୟ ପୁଣି କହିଲା, "ମୁଁ ସେଦିନ ଯେଉଁକଥା କହୁଥିଲି, ତାହା କ'ଣ ତମେ ଶୁଣି ନ ଶୁଣିଲା ଭଳି ରହିଗଲ ? ତମ ଖୁଡ଼ୀ ମୋର ନିଜ ଶାଶୂ ନୁହନ୍ତି ଯେ ମୁଁ ତାଙ୍କ ସେବା କରି ଚାଲିଥିବି ବା ତାଙ୍କ ମନରକ୍ଷା କାମଦାମ କରୁଥିବି । ମୁଁ କ'ଣ ପରର ଖଟିବା ପାଇଁ ବାହା ହୋଇଥିଲି ? ମୁଁ କିଛି ଅନ୍ୟାୟ କହୁନାହିଁ । ନିଜ ଝିଅ ମା'ର ସୁଖଦୁଃଖ ଯେତେ ଭଲ ଭାବରେ ବୁଝିବ, ବୋହୂ କ'ଣ ସେତେ ବୁଝିପାରିବ ? ତେଣୁ ତମେ ତମ ଖୁଡ଼ୀଙ୍କୁ ବୁଝାଇ କୁହ, ସେ ତାଙ୍କ ଝିଅ ପାଖରେ ଯାଇ ରହି ସୁଖରେ ଚଳିବେ ।"

ତପନ ଏକଥା ଶୁଣି ଅତ୍ୟନ୍ତ ଦୁଃଖିତ ହୋଇ କହିଲା, "ତମେ ଏଭଳି କଥା ମୁହଁରେ ଆଣିପାରୁଛ କିପରି ? ମୋ ଖୁଡ଼ୀ ମୋତେ ପାଳି ପୋଷି ମଣିଷ କରିଛନ୍ତି । ଆମ ପାଇଁ ତାଙ୍କର ଉପସ୍ଥିତି ଅନିବାର୍ଯ୍ୟ ।" ଲାବଣ୍ୟ ଆହୁରି ଚିଡ଼ିଯାଇ କହିଲା, "କହିତ ଦେଉଛ ଆଦର୍ଶ କଥା । ଯେପରି ବାଣିଜ୍ୟ ବ୍ୟବସାୟ କରି ଟଙ୍କାରେ ଘର ଭରି ଦେଉଛ ! ଯେତେ ଟଙ୍କା ପାଉଛ ଦୁଇଜଣ ଚଳିବା ମହାକଷ୍ଟ । ପୁଣି ଅଧିକା ଜଣେ ଅକାରଣରେ ବୋଝ ହୋଇ ରହିବାର ମାନେ କ'ଣ ? ତମେ ମୁହଁରେ ସଫା ସଫା କହିଦିଅ ।"

ସେତେବେଳେ ପାଖ କୋଠରିରେ ମୀନାକ୍ଷୀ ଶୋଇ ରହିଥିଲେ । ପାଟି ଶୁଣି ଉଠି ପଡ଼ିଲେ ଓ ଦୁହିଁଙ୍କର କଥାବାର୍ତ୍ତା ଶୁଣି ପାରିଲେ । ସକାଳୁ ଉଠି ତପନକୁ କିଛି ନକହି ଚୁପ୍‌ଚାପ୍ ସେ ଝିଅ ଘରକୁ ଚାଲିଗଲେ । ସ୍ତ୍ରୀକୁ ଡରି ତପନ ମଧ୍ୟ କିଛି କହିଲା ନାହିଁ ।

ଘରର ଏସବୁ ଗଣ୍ଡଗୋଳ ନେଇ ସହରରେ କାମରେ ଯୋଗ ଦେବାକୁ ତପନର ଟିକିଏ ଡେରି ହୋଇଗଲା । ତେଣୁ ସେ ସେଦିନ ସନ୍ଧ୍ୟା ପର୍ଯ୍ୟନ୍ତ ରହି ସବୁ କାମ ଶେଷ କଲା ।



ଫେରୁ ଫେରୁ ରାତି । ସେଦିନ ପୂର୍ଣ୍ଣିମା ତିଥି ଥିବାରୁ ଚାରିଆଡ଼େ ସଫା ଜହ୍ନ ପଡ଼ୁଥାଏ । ସେ ସହରରୁ ଗୋଟିଏ ଛୋଟ ଜଙ୍ଗଲ ରାସ୍ତା ଦେଇ ଫେରୁଥାଏ । ଆସୁ ଆସୁ ସେ ଗୋଟିଏ ଗଛ ନିକଟରେ ପହଞ୍ଚିବାରୁ ଗଛର ପତ୍ର ସବୁ ଝରଝର ଶବ୍ଦ କଲେ । ପର ମୁହୂର୍ତ୍ତରେହିଁ ଜଣେ କିଏ ଗଛ ଭିତରୁ କଥା କହୁଥିବାର ସେ ଶୁଣି ପାରିଲା ।

"କିଏ ଯାଉଛ, ପାଖକୁ ଆସ । କ'ଣ ଚାହିଁ ମାଗି ପାଇବ ।"

ତପନ ଆଶ୍ଚର୍ଯ୍ୟ ହୋଇ ଦେଖିଲା ଜାମୁଗଛଟିଏ । ସେ କହିଲା, "ଜାମୁଗଛ ଆଉ କ'ଣ ଦେଇ ପାରିବ ? ଜାମୁକୋଳିହିଁ ଦେବ ।"

କହିବା ମାତ୍ରେ ଜାମୁକୋଳି ଗୁଡ଼ାଏ ତା' ପାଖରେ ପଡ଼ିଲା । ସେ ଗୋଟାଇ ତାକୁ ସବୁ ଥଳୀରେ ଭରିଲା ।

କିଛିଦୂର ଯିବାପରେ ଆଉ ଗୋଟିଏ ଗଛର ପତ୍ରଗୁଡ଼ିକ ଝରଝର ଶବ୍ଦ କଲେ ଓ ତା' ଭିତରୁ ଏକ ସ୍ୱର ଶୁଭିଲା ସ୍ୱରଟି ।

କହୁଛି, "ମୁଁ ତତେ କ'ଣ ଦେବି ?"

ତପନ ଦେଖିଲା ସେଇଟି କଇଥ ଗଛ । ସେ କହିଲା, "କଇଥ ଗଛ କ'ଣ ଦେବ ? କଇଥ ଫଳହିଁ ଦେଇପାରିବ ।" ସଙ୍ଗେ ସଙ୍ଗେ କଇଥଟିଏ ଆସି ତା' ପାଦପାଖରେ ପଡ଼ିଲା । ସେ ସେଇଟିକୁ ନେଇ ଥଳୀରେ ରଖିଲା ।

ପୁଣି କିଛି ଦୂର ଗଲା ପରେ ଆଉ ଗୋଟିଏ ଗଛରେ ପତ୍ରମାନେ ଝରଝର ଶବ୍ଦ କରିବା ସଙ୍ଗେ ସଙ୍ଗେ ଏକ ସ୍ୱର ଶୁଣାଗଲା । ସ୍ୱର କହୁଥାଏ, "ରହ, ରହ, ଦେଉଛି । ଯାହା ନେବୁ ନେଇଯା । କିନ୍ତୁ ରାବଣଚନ୍ଦ୍ର ନେଇଯା' ।"

ତପନ ମୁଣ୍ଡ ଟେକି ଚାହିଁଲା ସେଇଟି ଆମ୍ବଗଛ । ସେ କହିଲା, "ଆମ୍ବଗଛ କ'ଣ ଦେବ, ଆମ୍ବ ତ ଦେଇପାରିବ ।" ତତ୍‌କ୍ଷଣାତ୍ ପାଚିଲା ଆମ୍ବଟିଏ ତା' ପାଖରେ ପଡ଼ିଲା । ସେଇଟି ଉଠାଇ ସେ ଥଳୀ ଭିତରେ ରଖିଲା । ତା'ପରେ ଜଙ୍ଗଲ ଶେଷ ହୋଇଗଲା ଓ ସେ ଯାଇ ଘରେ ପହଞ୍ଚିଲା ।



ଘରେ ଲବଣ୍ୟ ତପନ ହାତରୁ ଥଳୀଟି ନେଇ ଉକ୍ତଫଳ ଦେଖି କହିଲା, "ଏ ଫଳର ସମୟ ତ ଏବେ ନୁହେଁ, କିପରି ପାଇଲ ?"

ତପନ ରାସ୍ତାରେ ହୋଇଥିବା ତା'ର ସବୁ ଅନୁଭୂତ ତାକୁ କହିଲା । ଲବଣ୍ୟ ରାଗିଯାଇ କହିଲା : "ତୁମପରି ମୂର୍ଖ ସଂସାରରେ ନାହିଁ । ତମେ କ'ଣ ଭାବୁଛ ଗଛମାନେ ତୁମ ସହିତ କଥା କହୁଥିଲେ ? ସେ ଗଛରେ କେହି ପରୋପକାରୀ ପିଶାଚ ବା ବନ-ଦେବତା ବୋଧହୁଏ ଅଛନ୍ତି । କାଲି ତମେ ସେଇବାଟେ ଅନ୍ଧାରରେ ଆସିବ ଓ ମୁଁ ଯାହା ବତାଇବ ସେଇଆ ମାଗିବ, ବୁଝିଲ ?"

ରାତଯାକ ଲବଣ୍ୟ ଭାବି ଭାବି ଠିକ୍ କଲା କ'ଣ ମାଗିବାକୁ ହେବ । ସକାଳ ହେଉ ହେଉ ତପନକୁ ସବୁକଥା ବୁଝାଇ କହିଲା ।

ପରଦିନ ତପନ ଫେରିବା ସମୟରେ ପ୍ରଥମ ଗଛ ନିକଟରେ ଲବଣ୍ୟ କହିଥିବା କଥା ମନେକରି କହିଲା, "ଜାମୁଗଛ, ଜାମୁଗଛ, ତମେ ମୋତେ ସୌନ୍ଦର୍ଯ୍ୟ ଦେଇପାରିବ ? ତେବେ ମୁଁ କେତେ ଖୁସି ହେବ ।"

ତତ୍କ୍ଷଣାତ୍ ଗଛରୁ ଏକ ସ୍ୱର୍ଣ୍ଣାଭ ଆଲୋକ ଆସି ତା' ଦେହରେ ପଡ଼ିଲା ଓ ସେ ଦେଖିଲା ତା'ର ଶରୀରର ରଙ୍ଗ ଗୋରା ହୋଇ ଯାଇଛି ଓ ସେ ଖୁବ୍ ସୁନ୍ଦର ହୋଇ ଯାଇଛି ।"

ଠିକ୍ ପରେ ପରେ ବଜ୍ରପାତ ହୋଇ ଜାମୁକୋଳି ଗଛଟି ଜଳିଗଲା । ତପନ ଆସି କଇଥ ଗଛ ପାଖରେ ପହଞ୍ଚିଲା ଓ ସ୍ତ୍ରୀ କହିବା ଅନୁସାରେ କହିଲା, "କଇଥ ଗଛ, କଇଥ ଗଛ, ତମେ ମୋତେ ବହୁତ ଧନ ସମ୍ପତ୍ତି ଦେଇପାରିବ ?"

ତତ୍କ୍ଷଣାତ୍ ତପନ ହାତରେ ଗଛରୁ ଖସିପଡ଼ିଲା ଏକ ଥଳୀ । ସେ ହାତ ଦେଇ ଦେଖିଲା ତାହା ସୁନାର ମୋହରରେ ପୂର୍ଣ୍ଣ ।

ତା'ପରେ ସେ ଆମ୍ବ ଗଛ ନିକଟରେ ପହଞ୍ଚି ଦେଖିଲା କଇଥ ଗଛଟି ବଜ୍ରପାତରେ ଜଳିଯାଇଛି । ତପନ ଆମ୍ବଗଛକୁ କହିଲା, "ଆମ୍ବଗଛ, ଆମ୍ବଗଛ, ତମେ ମୋ ଉପରେ

ଈଶ୍ୱର ଚିହ୍ନ ଲଗେଇ ଦେବ ତ କେତେ ଭଲକଥା ହେବ ।" ପରକ୍ଷଣରେ ସେ ଅନୁଭବ କଲା କି ତାହାର ମୁଣ୍ଡ ଉପରେ କିଛି ଜିନିଷ ଆସି ପଡ଼ିଲା । ସେ ମୁଣ୍ଡରେ ହାତ ମାରି ଦେଖିଲା କିଛି ନାହିଁ ସେ ଆଉ ଦୁଇପାହୁଣ୍ଡ ଆଗକୁ ଯାଇଛି କି ନାହିଁ ଆମ୍ବଗଛଟି ବଜ୍ରପାତରେ ଜଳିଗଲା ।

ତା'ପରେ ମୋହର ଥଳୀ ଧରି ସେ ଗୋଟିଏ ଉଚ୍ଚ ଜାଗାରୁ ତଳକୁ ଓହ୍ଲାଇଲା-ବେଳେ ଗୋଡ଼ ଖସି ଯାଇ ପଡ଼ିଲା ଏକ ପଙ୍କପୂର୍ଣ୍ଣ ଗଡ଼ିଆରେ । ବହୁଦିନର ପୁରୁଣା ପଙ୍କ, ଦେଖୁ ଦେଖୁ ସେ ଛାତି ପର୍ଯ୍ୟନ୍ତ ବୁଡ଼ିଗଲା । ଉଠିବାର ଶକ୍ତି ନାହିଁ । ତପନ ଭାବିଲା ମୃତ୍ୟୁ ସୁନିଶ୍ଚିତ । ଠିକ୍ ଏଇ ସମୟରେ ପୋଖରୀ କୂଳର ଗଛର ଏକ ଡାଳ ବଜ୍ରପାତରେ ଭାଙ୍ଗି ପଡ଼ିଲା । ସେଇ ଡାଳକୁ ଧରି ତପନ ସେଦିନ ପ୍ରାଣ ବଞ୍ଚାଇଲା ।

ସେ ବୁଝିଲା ଶେଷ ଗଛଟି ପାଖରୁ ସେ ଈଶ୍ୱର ବର ପାଇଥିଲା ବୋଲି କୌଣସି ମତେ ବଞ୍ଚିଗଲା । କିନ୍ତୁ ତା'ର ଧାରଣା ହେଲା, ତା'ର ଜୀବନୀ ଶକ୍ତି ଯେପରି ଆଉ ମୋଟେ ନାହିଁ । ଗଛ ଗୁଡ଼ିକ ଦଳି ଯିବାର ଦୃଶ୍ୟ ତାକୁ ଭୟଭୀତ କରିଥାଏ ।

ବହୁ କଷ୍ଟରେ ଏଇ ସବୁ ବିପଦ ଅତିକ୍ରମ କରି ଧୀରେ ଧୀରେ ସେ ଯାଇ ସକାଳ ହେବା ବେଳକୁ ଘରେ ପହଞ୍ଚିଲା ଓ ସଙ୍ଗେ ସଙ୍ଗେ ବେହୋସ୍ ହୋଇଗଲା । ଏସବୁ ଦେଖି ଲାବଣ୍ୟ ଭୟରେ ଥରୁଥାଏ । ଏପରି



ଅବସ୍ଥାରେ ଜଣେ କେହି ଅଭିଜ୍ଞ ବ୍ୟକ୍ତି ମଧ୍ୟ ଘରେ ନାହିଁ । ତେଣୁ ସେ ଖୁଡ଼ୀ ମୀନାକ୍ଷୀଙ୍କ ପାଖକୁ ଖବର ପଠାଇ ଡକାଇଲା ।

ମୀନାକ୍ଷୀ କାନ୍ଦି କାନ୍ଦି ଆସି ପହଞ୍ଚିଲେ ଓ ତାଙ୍କ ସେବା ଶୁଶ୍ରୂଷା ଯୋଗୁ ତପନ ମାସେ ଭିତରେ ଭଲ ହୋଇଗଲା । ମୀନାକ୍ଷୀ କ୍ରମେ ସବୁ ଘଟଣା କଥା ଶୁଣିଲେ ଓ ବୋହୂ ଲାବଣ୍ୟକୁ ଡାକି ବୁଝାଇଲେ, "ତୁ କାହିଁକି ତାକୁ ଏପରି ଶିଖାଇଲୁ ? ସ୍ୱାସ୍ଥ୍ୟ ସୌନ୍ଦର୍ଯ୍ୟଠାରୁ ମହତ୍ତ୍ୱପୂର୍ଣ୍ଣ ।"

ଲାବଣ୍ୟ କହିଲା, "ସଂସାରରେ ଅନଭିଜ୍ଞ ବ୍ୟକ୍ତି ମୁଁ ଆଉ କି କଥା ଶିଖାଇ ଥା'ନ୍ତି ? ମୋରି ଯୋଗୁ ସେ ଏତେ କଷ୍ଟ ସହିଲେ ।" ଏତିକି କହି ସେ କାନ୍ଦିଲା ।

ମୀନାକ୍ଷୀ ବୁଝିଥିଲେ ଯେ କୌଣସି ଅସ୍ୱାଭାବିକ ଶକ୍ତିର ଖିଆଲରେ ତପନ ଯାହା ପାଇଛି, ସେଥିରେ ତା'ର ମଙ୍ଗଳ ହେବନାହିଁ । ସେ ତପନ ଆଣିଥିବା ଧନ ଦାନ ଧର୍ମରେ ଖର୍ଚ୍ଚ କଲେ । ସେଥିରେ ଗ୍ରାମର ଭଙ୍ଗା ମନ୍ଦିର ମରାମତି ହେଲା ଓ ଗୋଟିଏ ଚିକିତ୍ସାଳୟ ସ୍ଥାପନ ହେଲା ।

"ଏବେ ମଧ୍ୟ ବିଳମ୍ବ ହୋଇ ନାହିଁ । ତପନ ପରିଶ୍ରମ କରି ରୋଜଗାର କରିବ ଓ ତମେ ଦିହେଁ ଭଲରେ ଚଳିବ । ଏସବୁ ମୂର୍ଖାମୀ ଆଉ କେବେ କରିବ ନାହିଁ । ଆଚ୍ଛା ମୁଁ ଗଲି ।" କହିଲେ ମୀନାକ୍ଷୀ ଓ ଲୁଗା ପଟା ସଜାଡ଼ିବାକୁ ଲାଗିଲେ ।

ଲାବଣ୍ୟ କାନ୍ଦି କାନ୍ଦି ଖୁଡ଼ୀ ମୀନାକ୍ଷୀଙ୍କ ହାତ ଧରି କହିଲା, "ଖୁଡ଼ୀ, ମୋ ଦୋଷ କ୍ଷମା କରନ୍ତୁ । ଆପଣ ଦୟାକରି କୁଆଡ଼େ ଯାଆନ୍ତୁ ନାହିଁ । ଆପଣଙ୍କ ବ୍ୟତୀତ ଆମର ଆଉ କିଏ ଶୁଭାକାଂକ୍ଷୀ ଅଛି ? ଆମେ ସଂସାର ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଆପଣଙ୍କ ବ୍ୟତୀତ ଆମେ କେମିତି ରହିବୁ ?"

ଲାବଣ୍ୟର ଏ ପରିବର୍ତ୍ତନ ଦେଖି ମୀନାକ୍ଷୀ ଓ ତପନ ଆଶ୍ଚର୍ଯ୍ୟ ଯେତିକି ହେଲେ ଖୁସି ହେଲେ ତା'ଠାରୁ ଅଧିକ ।






# ଟିମାର ସ୍ମୃତିଶକ୍ତି

ଅନେକ ଦିନ ତଳର କଥା । ଚନ୍ଦଗୁପ୍ତର ଜମିଦାରଙ୍କ ପାଖରେ ଟିମା ବୋଲି ଜଣେ ଲୋକ କାମ କରୁଥାଏ । ସେ ଏଡ଼େ ଭୋଳ ଯେ ତାକୁ ସର୍ବଦା କେହି ଜଣେ ଜଗି ରହି କାମଦାମ ମନେ ପକାଇ ନଦେଲେ ସେ ହୁଏତ ବିପରୀତ କରି ଥୋଇବ । ତେବେ ଜମିଦାର ତାକୁ କାମରେ ରଖିଥାନ୍ତି, କାରଣ ସେ ବଡ଼ ନମ୍ର ସ୍ୱଭାବର ଲୋକ ।

ଦିନେ ରାତିରେ ଜମିଦାର ହଠାତ୍ ପେଟରେ ଯନ୍ତ୍ରଣା ଅନୁଭବ କଲେ । ସେତେବେଳେ ତାଙ୍କ ପରିବାର ତାଙ୍କ ଶ୍ୱଶୁର ଘରକୁ ଯାଇଥାନ୍ତି । ପାଖରେ ଟିମା ଛଡ଼ା ଏକ କ୍ରୋଶ ଦୂରରେ ଥିବା କବିରାଜଙ୍କ ଘରକୁ ଗଲାଭଳି ଲୋକ କେହି ନଥିଲେ । ସେ ଟିମାକୁ କହିଲେ, "ଯା ବୈଦ୍ୟରାଜଙ୍କୁ କହିବୁ ମୋ ପେଟ ବଡ଼ ଦରଜ ହେଉଛି । ବୈଦ୍ୟରାଜ ବୁଢ଼ା ଲୋକ । ଏତେ ରାତିରେ ତାଙ୍କୁ ଆସିବାକୁ କହି ହଇରାଣ କରିବା ଠିକ୍ ହେବ ନାହିଁ । ଖାଲି ଶୀଘ୍ର ଯେପରି ଦରଜ ଉପଶମ ହେବ, ସେଥିପାଇଁ ଔଷଧ ନେଇ ଆସିବୁ ।"

ଟିମା ଖୁବ୍ ଶୀଘ୍ର ଯିବା ଆସିବା କରି ପାରୁଥିଲା । ସେ ଅଳ୍ପ ସମୟ ଭିତରେ ଔଷଧ ନେଇ ଆସିଲା । "ବୈଦ୍ୟରାଜ କହିଛନ୍ତି ଏ ଔଷଧ ଖାଇବାର ପାଞ୍ଚ ଦଶ ମିନିଟ ଭିତରେ ମୁଣ୍ଡ ଦରଜ ଭଲ ହୋଇଯିବ !"

"ମୁଣ୍ଡ ଦରଜ ? ବୁଦ୍ଧୁ, ମୁଁ ପରା ତୋତେ ପେଟ ଦରଜ ବୋଲି କହିଲି ?"

ଟିମା ମୁଣ୍ଡ ଆଉଁସି ଠିଆ ହୋଇ ରହିଲା । "ଯା, ପୁଣି ଦୌଡ଼ି କରି ଯା । କହିବୁ ମୁଣ୍ଡ ଦରଜ ନୁହେଁ, ପେଟ ଦରଜ । ଏଥର ଭୁଲ କରିବୁ ନାହିଁ । ନୂଆ ଔଷଧ ନେଇ ଆସିବୁ ।" ଜମିଦାର ବିରକ୍ତ ଭାବରେ କହିଲେ ।

ସମରେନ୍ଦ୍ର

ଝିମା ଚାଲିଗଲା । ସେ ଆସିଲା ଖୁବ୍ ଶୀଘ୍ର ।

"ହେଇଟି ଔଷଧ । ହଜୁର ! ପାଞ୍ଚ ଦଶ ମିନିଟରେ ଉପକାର ପାଇବେ ।"

ଜମିଦାର ଔଷଧ ଖାଇଲେ । ପାଞ୍ଚ ଦଶ ମିନିଟରେ ତ ଦୂରର କଥା, ଦୁଇ ଘଣ୍ଟାରେ ମଧ୍ୟ ସେ କୌଣସି ଉପକାର ହେଲାନାହିଁ ।

ସକାଳେ କବିରାଜ ଆସି ପହଞ୍ଚିଲେ । କ'ଣ ଆଜ୍ଞା, ମୁଣ୍ଡ ଦରଜ ଭଲ ହୋଇଗଲା ?"

"ମୁଣ୍ଡ ଦରଜ ପାଇଁ ଆପଣ ଦ୍ୱିତୀୟ ଥର ଔଷଧ ଦେଇଥିଲେ ?" ଜମିଦାର ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଆଉ କେଉଁଥିପାଇଁ ଦିଅନ୍ତି ? ପ୍ରଥମ ଥର ଝିମା ଯାଇ କହିଲା ପେଟ ଦରଜ ହୋଇଛି ବୋଲି । ଦ୍ୱିତୀୟ ଥର ଯାଇ କହିଲା କି ପେଟ ନୁହେଁ ମୁଣ୍ଡ !"

ଜମିଦାର ମୁଣ୍ଡରେ ହାତ ଦେଇ ବସିଲେ । ପ୍ରଥମ ଥର ସେ ଠିକ୍ ଔଷଧ ଆଣି ମଧ୍ୟ ଭୁଲ ଔଷଧ ଆଣିଛି ବୋଲି କହିବାରୁ ଜମିଦାର ସେ ଔଷଧ ଖାଇଲେ ନାହିଁ । ଦ୍ୱିତୀୟ ଥରର ଭୁଲ୍, ଔଷଧ ଖାଇ ବଡଯାକ କଷ୍ଟ ପାଇଲେ ! ସେ ଝିମାକୁ ତତ୍‌କ୍ଷଣାତ୍ ଡକାଇ ତା' ଦରମା ଦେଇଦେଲେ ଓ କହିଲେ, "ଯା । ତୋତେ ଚାକିରିରୁ ବରଖାସ୍ତ କରାଗଲା ।"

ଝିମା ମୁଣ୍ଡ ଆଉଁସି ଚାଲିଗଲା ।

ପରଦିନ ଦେଖିବା ବେଳକୁ ସେ ଆସି କାମ କରୁଛି । "କିରେ, ତୋତେ ପରା ଚାକିରିରୁ ବାହାର କରି ଦେଇଥିଲି ?" ଜମିଦାର ଧମକ ଦେଇ ପଚାରିଲେ ।

"ଭୁଲି ଯାଇଥିଲି, ହଜୁର ।" କହି ସେ ଚାଲିଗଲା । ପାଞ୍ଚ ମିନିଟ ପରେ ପୁଣି ଆସି ସେ ଜମିଦାରଙ୍କୁ କିଛି ଟଙ୍କା ଦେଖାଇ କହିଲା, "ହଜୁର, କାଲି କ'ଣ ଆଣିବା ପାଇଁ ଏ ଟଙ୍କା ଦେଇଥିଲେ ମନେ ପଡୁନାହିଁ ।"

ଜମିଦାର ବୁଝିଲେ, ସିଏ ତା' ଦରମା ।

"ହଉ ହେଲା । ଯିମିତି କାମ କରୁଥିଲୁ ସେମିତି କାମ କର ।" ସେ କହିଲେ ।





# ବିଷ୍ଣୁ ପୁରାଣ

ଶ୍ରୀରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ ହେଲା । ସେ ଅନୁଜମାନଙ୍କ ସହାୟତାରେ ସୁଶାସନ କରିବାକୁ ଲାଗିଲେ । ସେଥିପାଇଁ ଆଦର୍ଶ ଶାସନରେ ଥିବା ରାଜ୍ୟକୁ ରାମରାଜ୍ୟ କୁହାଯାଏ । ତାଙ୍କ ଶାସନରେ ପ୍ରଜାମାନେ ଆନନ୍ଦରେ କାଳଯାପନ କରୁଥିଲେ ।

ଦିନେ ଜଣେ ବ୍ରାହ୍ମଣ ତା'ର ପାଞ୍ଚବର୍ଷର ପୁଅର ଶବ ନେଇ ଆସି ରାଜଦ୍ୱାରରେ ଛିଡ଼ା ହୋଇ ବିଳାପ କରିବାକୁ ଲାଗିଲା । ବିଳାପ କରୁ କରୁ ସେ କହୁଥାଏ, "ଯଦି ରାଜାଙ୍କର ସୁଶାସନ ହେଉଥାଏ ତେବେ କିପରି ଏ ବାଳକ ଅକାଳ ମୃତ୍ୟୁ ମୁଖରେ ପଡ଼ିଲା ? କୌଣସି ଇକ୍ଷ୍ୱାକୁ ବଂଶର ରାଜାଙ୍କ ଶାସନରେ ଏପରି ହୋଇନାହିଁ ।"

ବ୍ରାହ୍ମଣ ମୁହଁରୁ ଏପରି କଥା ଶୁଣି ରାମଚନ୍ଦ୍ର ଦୁଃଖିତ ହେଲେ । ତା'ପରେ ସେ ବଶିଷ୍ଠ, ନାରଦ ଆଦି ଋଷିଗଣଙ୍କୁ ଓ ପାତ୍ରମନ୍ତ୍ରୀଙ୍କୁ ଡାକି ଏକଥା କହିଲେ । ନାରଦ କହିଲେ, "ଶମ୍ବୁକ ନାମରେ ଜଣେ ଶୂଦ୍ର ତପସ୍ୟା କରୁଛି । ଏହା ଯୁଗଧର୍ମର ବିରୁଦ୍ଧ । ସେଥିପାଇଁ ବାଳକଟିର ଅକାଳ ମୃତ୍ୟୁ ହୋଇଛି ।"

ତା'ପରେ ରାମଙ୍କ ଆଦେଶରେ ଲକ୍ଷ୍ମଣ ଯାଇ ବ୍ରାହ୍ମଣଙ୍କୁ ସାନ୍ତ୍ୱନା ଦେଲେ ଓ ମୃତ ବାଳକର ଶରୀରଟି ଗୋଟିଏ ତେଲ ପାତ୍ରରେ ସ୍ଥାପନ କଲେ । ତା'ପରେ ସେ ଦିବ୍ୟ ଅସ୍ତ୍ରଶସ୍ତ୍ର ଓ ବାଣରେ ସୁସଜ୍ଜିତ ହୋଇଗଲେ । ସେ ପୂର୍ବ, ପଶ୍ଚିମ ଓ ଉତ୍ତର ଦିଗରେ ଅନ୍ୱେଷଣ କରି କିଛି ପାଇଲେ ନାହିଁ ।



ଶେଷରେ ସେ ଦକ୍ଷିଣ ଦିଗକୁ ଗଲେ। ଅନେକ ଦୂର ଯାଇ ଦେଖିଲେ ଜଣେ ଲୋକ ଗୋଟିଏ ସରୋବରରେ ଥାଇ ତପସ୍ୟା କରୁଛି।

ରାମଚନ୍ଦ୍ର ପୁଷ୍ପକ ବିମାନରୁ ଓହ୍ଲାଇ ତାକୁ ମାରିଲେ। ଶମ୍ବୁକର କଟାମୁଣ୍ଡ ଧୀରେ ଧୀରେ ଆଖି ଖୋଲି ରାମଚନ୍ଦ୍ରଙ୍କୁ କହିଲା, "ହେ, ରାମ ମୃତ୍ୟୁକୁ ଯେ କୌଣସି ଦିଗରୁ ଦେଖିଲେ ମଧ୍ୟ ତାହା ଅନିବାର୍ଯ୍ୟ। ଆପଣ ବର୍ଣ୍ଣାଶ୍ରମ ଧର୍ମ ପାଳନ କରୁଛନ୍ତି। ଆପଣ ଜନତାଙ୍କର ସେବକ। ତାଙ୍କର ଭଲ ପାଇଁ ଆପଣ ମନରେ ଅନୁଶୋଚନା କରନ୍ତୁ ନାହିଁ। ମୁଁ ଜନ୍ମ ଜନ୍ମ ଧରି ଯୋଗୀ। ତେଣୁ ଏବେ ଶ୍ରୀବିଷ୍ଣୁଙ୍କର ସାନ୍ନିଧ ଲାଭ କରିବା ପାଇଁ ମୁଁ ସ୍ୱର୍ଗକୁ ଯିବି।" ଏତିକି କହି ସେ ଆଖି ବୁଜିଲା।

ତା'ପରେ ରାମ ଅଯୋଧ୍ୟା ଫେରିବା ବେଳକୁ ବାଟରେ ଦେଖିଲେ ଚିଲଟାଏ ଦିନବେଳେ ପେଚାର ବସା ବାରମ୍ବାର ଆକ୍ରମଣ କରୁଛି। ତାକୁ ମଧ୍ୟ ରାମ ଦଣ୍ଡ ଦେଲେ। ଦଣ୍ଡ ପାଇବା ମାତ୍ରେ ଚିଲର ଶରୀର ନେଇଥିବା ବ୍ରହ୍ମଦତ୍ତ ଅଭିଶାପରୁ ମୁକ୍ତ ହୋଇ ସ୍ୱର୍ଗକୁ ଚାଲିଗଲେ।

ଥରେ ବିଶ୍ୱାମିତ୍ର ରାମଙ୍କ ସଭାକୁ ଆସି ଅଭିଯୋଗ କଲେ କି ଶକୁନ୍ତ ନାମକ ଜଣେ ରାଜା ତାଙ୍କୁ ଅପମାନ କରିଛନ୍ତି। ତେଣୁ ରାମ ତାଙ୍କୁ ବଧ କରିବା ଉଚିତ। ରାମଚନ୍ଦ୍ର ବାଧ୍ୟ ହୋଇ ଗୁରୁ ଆଜ୍ଞା ପାଳନ କରି ଶକୁନ୍ତଙ୍କୁ ମାରିବାକୁ ବାହାରିଲେ।

ଶକୁନ୍ତ ଅନନ୍ୟୋପାୟ ହୋଇ ହନୁମାନଙ୍କ ମାତା ଅଞ୍ଜନା ଦେବୀଙ୍କର ଶରଣ ନେଲେ। ମା'ଙ୍କର ଅନୁରୋଧରେ ସ୍ୱୟଂ ହନୁମାନ ମୁହଁରେ ରାମନାମ ଜପ କରି କରି ଶକୁନ୍ତଙ୍କୁ ରକ୍ଷା କରି ରାମଙ୍କ ଅସ୍ତ୍ରକୁ ଅପେକ୍ଷା କରି ରହିଲେ। ରାମଙ୍କ ଭୟଙ୍କର ବାଣ ହନୁମାନଙ୍କ ହୃଦୟରେ ବାଜି ସେଇଠି ଲୀନ ହୋଇଗଲା। ଏସବୁ ଦେଖି ବିଶ୍ୱାମିତ୍ର ଚକିତ ହେଲେ ଓ ତାଙ୍କର ରାଗ ସମ୍ବରଣ କଲେ।

ଦିନେ ରାମ ଖବର ପାଇଲେ ଯେ ରାଜ୍ୟରେ ଜଣେ ନୀଚ ଶ୍ରେଣୀର ବ୍ୟକ୍ତି ତା' ସ୍ତ୍ରୀକୁ କହୁଛି, "ପରଘରେ ରହିଥିବା ସ୍ତ୍ରୀକୁ ଗ୍ରହଣ




କରି ନିଜର ମୂର୍ଖତାର ପରିଚୟ ଦେବାଭଳି ସ୍ୱାମୀ ମୁଁ ନୁହେଁ ।" ଏକଥା ଶୁଣି ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଆଦେଶ ଦେଲେ ସୀତାଙ୍କୁ ବଣରେ ଛାଡ଼ି ଆସିବା ପାଇଁ । ଏକଥା ଶୁଣି ଲକ୍ଷ୍ମଣ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୁଅନ୍ତେ ରାମ ତାଙ୍କୁ ବୁଝାଇ କହିଲେ, "ହେ ଲକ୍ଷ୍ମଣ, ଜଣେ ନିମ୍ନସ୍ତରର ବ୍ୟକ୍ତିର ମୁହଁରୁ ଏପରି କଥା ବାହାରିଲା ମାନେ ଅନ୍ୟମାନଙ୍କ ମନରେ ମଧ୍ୟ ଏହା ଅଛି କିନ୍ତୁ ସେମାନେ ପ୍ରକାଶ କରୁନାହାନ୍ତି । ରାଜ୍ୟର ଅର୍ଥ ମାଟି ନୁହେ, ମଣିଷ । ବିବିଧ ବର୍ଣ୍ଣର ଲୋକଙ୍କ ଉପରେ ଦକ୍ଷତାର ସହିତ ଶାସନ କରିବା ସହଜ ନୁହେଁ, ତରବାରି ଧାରରେ ଚାଲିବା ପରି । ଏଥିରେ ସ୍ୱାର୍ଥର ଟିକିଏ ବି ସ୍ଥାନ ନାହିଁ । ପ୍ରଜାଙ୍କର ମନୋଭାବ ଅନୁସାରେ ନିଜର କର୍ତ୍ତବ୍ୟ ଠିକ୍ କରିବା ଉଚିତ୍ । ସେତେବେଳେ ରାଜା ନିଜ ହୃଦୟକୁ ସବୁଥିପାଇଁ ପଥର କରିଦେବା ଉଚିତ୍ ।

ଅନେକ ଦିନ ହେବ ସୀତା ମଧ୍ୟ ବନବିହାର କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ସେତେବେଳେ ସେ ଗର୍ଭବତୀ ଥିଲେ । ସେଥିପାଇଁ ତାଙ୍କ ଇଚ୍ଛା ପୂର୍ଣ୍ଣ କରିବା ବାହାନାରେ ଲକ୍ଷ୍ମଣ ତାଙ୍କୁ ନେଇ ଘନ ଜଙ୍ଗଲରେ ଛାଡ଼ିଦେଲେ । ସେଠାରେ ଲକ୍ଷ୍ମଣ ଦୁଃଖରେ ବ୍ୟସ୍ତ ହୋଇ ବିଳାପ କରୁ କରୁ କହିଲେ, "ହାୟ, ରାମରାବଣ ଯୁଦ୍ଧରେ ସେତେବେଳେ ମୁଁ ମରିବାକୁ ଯାଉଥିଲି, ସେତେବେଳେ ହନୁମାନ ସଞ୍ଜୀବନୀ ଔଷଧ ଆଣି ମୋତେ ବଞ୍ଚାଇଥିଲେ କ'ଣ ଆଜିର ଏଇ ନିଷ୍ଠୁର ଘଟଣା ଦେଖିବା ପାଇଁ ?"

ଲକ୍ଷ୍ମଣଙ୍କ ବିଳାପରୁ ସୀତା ସବୁ ବୁଝିନେଲେ । ତା'ପରେ ସେ ମଧ୍ୟ ବିଳାପ କଲେ । ପରେ ଋଷି ବାଲ୍ମୀକି ସୀତାଙ୍କୁ ନିଜ ଆଶ୍ରମକୁ ନେଇଗଲେ । ସେଠାରେ କିଛିଦିନ ପରେ ସେ ଦୁଇଟି ଯାଆଁଳା ପୁତ୍ର ଜନ୍ମ କଲେ । ସେମାନଙ୍କ ନାମ ହେଲା ଲବ ଓ କୁଶ ।

ଥରେ ଅଯୋଧାରେ ବହୁତ ଦିନ ଧରି ବର୍ଷା ନ ହୋଇ ମରୁଡ଼ି ପଡ଼ିଗଲା ଓ ନାନା ପ୍ରକାର ବିପଦ ଦେଖାଦେଲା । ତେଣୁ ସମସ୍ତେ ରାମଙ୍କୁ ପ୍ରସ୍ତାବ ଦେଲେ ଅଶ୍ୱମେଧ ଯଜ୍ଞ



ରାମଚନ୍ଦ୍ର ମଧ୍ୟ ଲବକୁଶଙ୍କ ବାଣରେ ଧରାଶାୟୀ ହେଲେ । ପରେ ବାଲ୍ମୀକି ଓ ସୀତା ସେଠାରେ ଆସି ପହଞ୍ଚିଲେ । ବାଲ୍ମୀକିଙ୍କ ମନ୍ତ୍ରରେ ସମସ୍ତେ ପୁଣି ସଚେତନ ହୋଇ ଉଠିଲେ । ବାଲ୍ମୀକି ସୀତା ଓ ତାଙ୍କର ଦୁଇ ପୁତ୍ରଙ୍କୁ ରାମଙ୍କ ହାତରେ ସମର୍ପଣ କଲେ । ରାମଚନ୍ଦ୍ର ପତ୍ନୀ ସୀତା ଓ ଦୁଇ ପୁତ୍ରଙ୍କୁ ନେଇ ଆସିଲେ । କିନ୍ତୁ ପୁନର୍ବାର ପତ୍ନୀଙ୍କୁ ଗ୍ରହଣ କରିବା ପୂର୍ବରୁ ପ୍ରସ୍ତାବ ହେଲା ସୀତା ଆଉ ଥରେ ପରୀକ୍ଷା ଦେବେ । ସୀତାଙ୍କର ଆଉ ଏଇ ପାର୍ଥିବ ଜୀବନ ପ୍ରତି କୌଣସି ଆସକ୍ତି ନଥିଲା । ସେ ତାଙ୍କର ମାତା ଧରିତ୍ରୀଙ୍କୁ ଆବାହନ କରି କହିଲେ, "ମା ବସୁଧା, ମୋର ପୁଅମାନେ ନିଜର ପିତାଙ୍କ ପାଖକୁ ଚାଲିଯିବା ପରେ ଏଇ ପୃଥିବୀରେ ମୋର ରହିବା ପାଇଁ ଆଉ କୌଣସି ଇଚ୍ଛା ନାହିଁ । ଆଜି ମୋର ଦୁଃଖମୟ ଜୀବନର ଅବସାନ ହେଉ । ମୋତେ ତୋର ଶାନ୍ତିପୂର୍ଣ୍ଣ କୋଳରେ ତୁ ଆଶ୍ରୟ ଦେ ।"

କରିବାକୁ । ଯଜ୍ଞ ପାଇଁ ଧର୍ମପତ୍ନୀର ଉପସ୍ଥିତି ଅନିବାର୍ଯ୍ୟ । ରାମ ତେଣୁ ଏକ ସ୍ୱର୍ଣ୍ଣ ସୀତା ବନାଇ ଯଜ୍ଞ କାମ ଆରମ୍ଭ କଲେ ।

ଯଜ୍ଞର ଘୋଡ଼ାକୁ ଛାଡି ଦିଆଗଲା ବଡ଼ିକି ରାଜ୍ୟ ବୁଲିବା ପାଇଁ । ତାକୁ ରାମଚନ୍ଦ୍ରଙ୍କ ଭାଇ ଓ ସୈନ୍ୟମାନେ ରକ୍ଷା କରୁଥା'ନ୍ତି । ଘୋଡ଼ା ବାଲ୍ମୀକି ଆଶ୍ରମରେ ପହଞ୍ଚିବାରୁ ଲବକୁଶ ସେମାନଙ୍କୁ ବାନ୍ଧି ପକାଇଲେ । ଯଜ୍ଞ ଅଶ୍ୱକୁ ମୁକ୍ତ କରିବାକୁ ରାମଙ୍କ ଭାଇମାନେ ଓ ସୈନ୍ୟମାନେ ଗଲେ । ସେମାନଙ୍କ ସହିତ ଲବକୁଶଙ୍କର ତୁମୁଳ ଯୁଦ୍ଧ ହେଲା ଓ ସେମାନେ ସବୁ ହାରିଗଲେ ଓ ବେହୋସ୍ ହୋଇ ପଡ଼ି ରହିଲେ । ଶେଷରେ ସ୍ୱୟଂ ରାମଚନ୍ଦ୍ର ଗଲେ ।

ପର ମୁହୂର୍ତ୍ତରେହିଁ ପୃଥିବୀ କମ୍ପି ଉଠିଲା ଓ ବସୁଧା ଦୁଇଭାଗ ହୋଇ ଫାଟିଗଲା । ଚତୁର୍ଦ୍ଦିଗରେ ଆଲୋକ ବିଚ୍ଛୁରିତ କରି ମାଟିତଳୁ ଉଠିଲା ଏକ ଦିବ୍ୟ ସିଂହାସନ । ସେଥିରେ ବସିଥିଲେ ଭୂଦେବୀ । ସେ ତାଙ୍କର କନ୍ୟା ସୀତାଙ୍କୁ ନେଇ କୋଳରେ ବସାଇଲେ ଓ ସମଗ୍ର ସିଂହାସନଟି ପୁଣି ପୃଥିବୀ ଗର୍ଭରେ



ଚିରଦିନ ପାଇଁ ଉଭେଇଗଲା । ଏଇ ସମୟରେ ସେଠାରେ ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେଲା ।

ରାମ ଦୁଃଖ ଓ କ୍ରୋଧରେ ପୃଥିବୀକୁ ପୁଣି ଦ୍ୱିଧା ବିଭକ୍ତ କରିବାକୁ ଧନୁରେ ବାଣ ଖଞ୍ଜିଲେ । ସେତେବେଳେ ଆକାଶବାଣୀ ହେଲା, "ହେ ରାମଚନ୍ଦ୍ର, କ୍ରୋଧ ସମ୍ବରଣ କରନ୍ତୁ । ସୀତା ଭୂଦେବୀଙ୍କର କନ୍ୟା । ପୃଥିବୀ ଉପରେ ତାଙ୍କର କାର୍ଯ୍ୟ ଶେଷ ହୁଅନ୍ତେ ସେ ପୁଣି ନିଜ ଲୋକକୁ ଫେରିଗଲେ ।"

ରାମଚନ୍ଦ୍ର, ପୁତ୍ର ଓ ଭାଇମାନଙ୍କ ସହ ଅନେକ ଦିନ ରାଜ୍ୟ ଭୋଗ କଲେ । ଦିନେ ମହାକାଳ ଜଣେ ବ୍ରାହ୍ମଣ ବେଶରେ ଆସି ରାମଙ୍କୁ କହିଲେ, "ମୋର ଆପଣଙ୍କୁ କହିବାର ଅଛି ଯାହା ଆଉ ତୃତୀୟ ଲୋକ କେହି ଜାଣିବା କଥା ନୁହେଁ । ସେଥିପାଇଁ ଆପଣ ଲକ୍ଷ୍ମଣଙ୍କୁ ଦ୍ୱାର ଜଗାଇଥା'ନ୍ତୁ । ଯଦି ସେ କାହାକୁ ଛାଡ଼ି ଦିଅନ୍ତି ତେବେ ତାଙ୍କର ମୃତ୍ୟୁ ଅନିବାର୍ଯ୍ୟ ।" ଲକ୍ଷ୍ମଣ ଦ୍ୱାର ଜଗି ରହିଲେ । ଭିତରକୁ ଯାଇ ମହାକାଳ ନିଜର ପ୍ରକୃତ ରୂପ ଧାରଣ କରି ରାମଙ୍କୁ କହିଲେ, "ଭଗବାନ୍, ଆପଣଙ୍କର ଏଇଥର ଅବତାର ହେବାର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ରୂପେ ପୂର୍ଣ୍ଣ ହୋଇଛି । ତେଣୁ ଆପଣ କୃପା କରି ପୁଣି ଶ୍ରୀବିଷ୍ଣୁ ରୂପରେ ବୈକୁଣ୍ଠକୁ ବିଜେ କରନ୍ତୁ ।"

ଠିକ୍ ସେହି ସମୟରେ ଦ୍ୱାର ଦେଶରେ ଆସି ପହଞ୍ଚିଲେ ଦୁର୍ବାସା ମୁନି । ସେ ଲକ୍ଷ୍ମଣଙ୍କୁ କହିଲେ ଯେ ସେ ସେହି ମୁହୂର୍ତ୍ତରେ ରାମଚନ୍ଦ୍ରଙ୍କ ସହ ଦେଖା କରିବାକୁ ଚାହାନ୍ତି । ଲକ୍ଷ୍ମଣ ଚିନ୍ତା କରି ଦେଖିଲେ ଯେ ସେ ନ ଛାଡ଼ିଲେ ସମଗ୍ର ରଘୁବଂଶ ଶାପଗ୍ରସ୍ତ ହେବ । ଯଦି ସେ ଛାଡ଼ନ୍ତି ତେବେ ମୃତ୍ୟୁ କେବଳ ତାଙ୍କର ହେବ । ତେଣୁ ସେ ତାଙ୍କୁ ବାଟ ଛାଡିଦେଲେ ଓ ପରେ ରାମଙ୍କଠାରୁ ବିଦାୟ ନେଇ ସରଯୂ ନଦୀ ଭିତରେ ଦେହ ତ୍ୟାଗ କଲେ ।

ଆଗରୁ ସୀତା ଯାଇଥିଲେ । ଏବେ ଲକ୍ଷ୍ମଣ ଗଲେ । ରାମଙ୍କ ପାଇଁ ପୃଥିବୀର ଆକର୍ଷଣ କ୍ରମେ କମି ଆସିଲା । ଦିନେ ଶ୍ରାବଣ ପୂର୍ଣ୍ଣିମାରେ ଚନ୍ଦ୍ରଗ୍ରହଣ ଥାଏ । ରାମଚନ୍ଦ୍ର ନିଜର ଦୁଇ ଭାଇ ଦୁଇ ପୁଅ ଓ ପ୍ରଜାମାନଙ୍କ

ଗହଣରେ ଧୀରେ ଧୀରେ ସରଜୁ ଆଡ଼େ ଚାଲିଲେ । ମଙ୍ଗଳ ଧ୍ୱନି ଓ ବେଦପାଠ ହେଉଥାଏ । ଠିକ୍ ସେତିକବେଳେ ଗ୍ରହଣ ଅପସାରିତ ହୋଇ ଚନ୍ଦ୍ର ଅତ୍ୟନ୍ତ ଶୋଭାବାନ ଦେଖାଯାଉଥା'ନ୍ତି । ସେହି ଶୁଭ ଲଗ୍ନରେ ସେ ସରଜୁର ଜଳ ମଧ୍ୟକୁ ଓହ୍ଲାଇ ଗଲେ । ତାଙ୍କ ପଛେ ପଛେ ତାଙ୍କ ଦୁଇ ଭାଇ ମଧ୍ୟ ଗଲେ । ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେଉଥାଏ । ବିଭିନ୍ନ ମଧୁର ରାଗରେ ଗନ୍ଧର୍ବମାନେ ଗାନ କରୁଥା'ନ୍ତି । ସରଜୁ ନଦୀର ଜଳରେ ରଜତ ଜ୍ୟୋତ୍ସ୍ନା ପ୍ରତିଫଳିତ ହୋଇ କ୍ଷୀର ସାଗରର ଭ୍ରମ ସୃଷ୍ଟି କରୁଥାଏ ।



ଏହା ପୂର୍ବରୁ ଲକ୍ଷ୍ମଣ ଶେଷନାଗଙ୍କ ରୂପ ଧରି ଓ ସୀତା ଲକ୍ଷ୍ମୀଙ୍କ ରୂପ ଧରି ରାମରୂପୀ ନାରାୟଣଙ୍କୁ ପ୍ରତୀକ୍ଷା କରୁଥା'ନ୍ତି । ଭରତ ଓ ଶତ୍ରୁଘ୍ନ ବିଷ୍ଣୁଙ୍କର ଶଙ୍ଖ ଓ ଚକ୍ରରେ ରୂପାନ୍ତରିତ ହେଲେ । ବିଷ୍ଣୁ ରାମାବତାରଙ୍କ କାର୍ଯ୍ୟ ଶେଷ କରି ଦିବ୍ୟ ଦେହ ଧରି ଶ୍ରୀବିଷ୍ଣୁଙ୍କ ରୂପ ନେଇ ନିଜ ସ୍ଥାନକୁ ଚାଲି ଆସିଲେ ।

ମାନବ ଜନ୍ମ ନେଇ ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ପ୍ରଥମେ ପିତାଙ୍କ ସତ୍ୟ ପାଳନ କରିବାକୁ ଯାଇ ବନବାସ କଲେ, ବାନର-ମାନଙ୍କ ସାହାଯ୍ୟ ନେଇ ସେତୁବନ୍ଧ ନିର୍ମାଣ କଲେ । ତା'ପରେ ଦୁର୍ଜ୍ଜୟ ରାକ୍ଷସ ରାବଣକୁ ଯୁଦ୍ଧକ୍ଷେତ୍ରରେ ବଧ କରି ରାକ୍ଷସ ଶାସନର ଶେଷ କଲେ । ସୀତାଙ୍କୁ ବିବାହ କରି ପବିତ୍ର ଏକପତ୍ନୀବ୍ରତ ପାଳନ କଲେ ଓ ଆଦର୍ଶ ଶାସନ ପ୍ରତିଷ୍ଠା କଲେ । ଚିରଦିନ ପାଇଁ ରାମରାଜ୍ୟ ଆଦର୍ଶ ଶାସନର ଉଦାହରଣ ହୋଇ ରହିଲା ।

ମହର୍ଷି ସୂତ ରାମାବତାରଙ୍କ କାହାଣୀ କହିସାରି କୃଷ୍ଣଅବତାରଙ୍କ କାହାଣୀ ଶୁଣାଇବାକୁ ଆରମ୍ଭ କଲେ ।

କୌଣସି ଏକ ସମୟରେ ଶିବ ଦେଖିଲେ ତାଙ୍କର ଅଧିକାଂଶ ଭକ୍ତ ବିଶେଷତଃ ରାକ୍ଷସମାନେ ନାନା ପ୍ରକାର ଉପଦ୍ରବ କରୁଛନ୍ତି ତାଙ୍କର ଶକ୍ତିରେ ଶକ୍ତିମାନ ହୋଇ; ବିଷ୍ଣୁ ହିଁ ସମସ୍ତଙ୍କୁ ସଂହାର କରୁଛନ୍ତି । ଏ ବିଷୟ ଭାବୁ ଭାବୁ ତାଙ୍କର ଭ୍ରୂ କୁଞ୍ଚିତ ହେଲା ଓ ସେହି

ଭ୍ରୂକୁଟିରୁ ଜାତ ହେଲା ସହସ୍ରକବଚ ନାମକ ରାକ୍ଷସ । ତା'ର କବଚ ସବୁ ବ୍ୟତୀତ ଏକ କୁଣ୍ଡଳ ଥିଲା ତା'ର ରକ୍ଷାକାରୀ ଶକ୍ତି । ସେହି ସବୁ କବଚକୁଣ୍ଡଳ ଯୋଗୁ ତାକୁ କେହି ଜିତ ପାରୁ ନଥା'ନ୍ତି । ସେଥିପାଇଁ ଅତିଶୟ ଗର୍ବିତ ହୋଇ ସେ କହୁଥାଏ, "ମୁଁ କୌଣସି ସାଧାରଣ ରାକ୍ଷସ ନୁହେଁ । ମୁଁ ଶିବଙ୍କ ଭ୍ରୂକୁଟିରୁହିଁ ଜନ୍ମ ହୋଇଛି । ବିଷ୍ଣୁଙ୍କର ଶକ୍ତି ଅଛି ତ ଆସି ମୋର ସାମନା କରନ୍ତୁ ।

ଏସବୁ ଶୁଣି ବିଷ୍ଣୁଙ୍କର ଏକ ଅଂଶ ନର-ନାରାୟଣ ରୂପରେ ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହେଲେ । ସେମାନେ ଥିଲେ ଦୁଇ ଜାଆଁଳା ଭାଇ । ସହସ୍ରକବଚକୁ ମାରିବା ଉଦ୍ଦେଶ୍ୟରେ ଦୁହେଁ ତପସ୍ୟା କରିବାକୁ ଲାଗିଲେ ।

ସେମାନଙ୍କର ଘୋର ତପସ୍ୟା ଦେଖି ଇନ୍ଦ୍ର ଭାବିଲେ, "ମୋ ଇନ୍ଦ୍ରପଦଟି ଗଲା ।" ସେଇ ଭୟରେ ସେ ଦୁଇଟି ଅପ୍ସରା ତାଙ୍କ ପାଖକୁ ପଠାଇଥା'ନ୍ତି ସେମାନଙ୍କର ଧ୍ୟାନ ଭାଙ୍ଗିବା ଉଦ୍ଦେଶ୍ୟରେ । ତାଙ୍କର ଏ ହୀନ ମନୋବୃତ୍ତି ଦେଖି ନାରାୟଣ ତାଚ୍ଛଲ୍ୟ କରି ହସିଲେ ଓ ନିଜ ଜଂଘ ବା ଉରୁକୁ ଚିରି କରି ଗୋଟିଏ ଅପରୂପ ସୁନ୍ଦରୀ କନ୍ୟା ବାହାର କରି ଇନ୍ଦ୍ରଙ୍କ ପାଖକୁ ଉପହାର ପଠାଇଲେ । ସେ ହେଉଛନ୍ତି ବିଖ୍ୟାତ ଅପ୍ସରା ଉର୍ବଶୀ ।

ନରନାରାୟଣଙ୍କ ତପସ୍ୟା ଓ ଯୁଦ୍ଧ ଏକାଦିକ୍ରମେ ଚାଲିଥାଏ । ଜଣେ ତପସ୍ୟା କଲେ ଅନ୍ୟଟି ଯୁଦ୍ଧ କରୁଥାଏ ସହସ୍ରକବଚ ସହିତ । ସେହିପରି ହଜାର ବର୍ଷ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଲା । ଯୁଦ୍ଧରେ ଏମାନେ ସହସ୍ର-କବଚର ନ ଶହ ଅନେଶ୍ୱତ ହାତ ଓ କବଚ କାଟି ପକାଇଲେ । ସେ ଗୋଟିଏ ମାତ୍ର କବଚ ଧରି ସୂର୍ଯ୍ୟ ମଣ୍ଡଳରେ ଲୁଚି ରହିଲା ।

ତେଣୁ ନାରାୟଣ ରାଗି ଯାଇ କହିଲେ, "ଭୀରୁ କେଉଁଠିକାର ! ହାରି ଯାଇ ଲୁଚିଲୁ ତ ଲୁଚିଥା, ମୁଁ କୃଷ୍ଣଅବତାରରେ ତତେ ଦେଖିନେବି ।"





# ଅଯୋଗ୍ୟର ଯୋଗ୍ୟତା

ଧନ୍ତପୁରର ରାଜା ପଦ୍ମଦେବ ମଧ୍ୟେ ମଧ୍ୟେ ଛଦ୍ମବେଶରେ ରାଜ୍ୟ ବୁଲି ଲୋକଙ୍କର ହାଲ୍ ଚାଲ୍ ଦେଖୁଥିଲେ । ଥରେ ସେମିତି ବୁଲୁଥିବା ଅବସ୍ଥାରେ ସେ ଅସୁସ୍ଥ ହୋଇ ପଡ଼ିଲେ ଓ ରାମନାଥ ନାମକ ଜଣେ ଗ୍ରାମ-ବାସୀଙ୍କ ଘରେ ଆଶ୍ରୟ ନେଲେ । ସେ ରାଜା ବୋଲି ବୁଝିବା ରାମନାଥଙ୍କ ପକ୍ଷରେ ସମ୍ଭବ ନଥିଲା । ତଥାପି ରାମନାଥ ତାଙ୍କର ସେବା ଶୁଶ୍ରୂଷାରେ କୌଣସି ତ୍ରୁଟି କଲେ ନାହିଁ । ରାଜା କ୍ରମେ ସୁସ୍ଥ ହେଲେ ।

"ଏଥର ମୁଁ ଯାଏଁ !" ରାଜା କହିଲେ ।

"ବାବୁ, ତମେ ଯିନା ସୁସ୍ଥ ହେଲଣି, କିନ୍ତୁ ଏ ପର୍ଯ୍ୟନ୍ତ ବହୁତ ଦୁର୍ବଳ ଅଛ । ଆଉ କିଛିଦିନ ରହିଯାଅ । ତୁମେ ଯଥେଷ୍ଟ ବଳ ଫେରି ପାଇବା ପୂର୍ବରୁ ଚାଲିଗଲେ ଅତିଥି ସେବାରେ ମୋର ତ୍ରୁଟି ହେବ ।" ରାମନାଥ କହିଲେ ।

ରାଜା ଏହାପରେ ଆହୁରି ଚାରି ପାଞ୍ଚଦିନ ରହିଲେ ଓ ଶେଷକୁ ବିଦାୟ ନେବାକୁ ପ୍ରସ୍ତୁତ ହେଲେ ।

ରାମନାଥର ଘର ଛାଡ଼ି ଯିବା ବେଳକୁ ରାଜା କହିଲେ, "ରାମନାଥ, ତୁମେ ମୋର ବହୁତ ଉପକାର କଲ । ତୁମ ଋଣ କିପରି ପରିଶୋଧ କରିବି ? ରାଜଧାନୀରେ ମୋର କିଛି ପ୍ରଭାବ ଅଛି । ଯଦି ତୁମର କୌଣସି କାମ କରି ପାରିବି, କୁହ ।"

ରାମନାଥ କହିଲେ, "ବାବୁ, ମୋ ପୁଅ ଶେଖର ପାଇଁ ମୁଁ ବଡ଼ ଚିନ୍ତିତ । ଅନେକ କଷ୍ଟ କରି, ପେଟରୁ କାଟି, ତାକୁ ପାଠ ପଢ଼ାଇଲି । କିନ୍ତୁ ଲାଭ ହେବା ତ ଦୂରର କଥା, କ୍ଷତି ହିଁ ହେଲା । ପାଠ ପଢ଼ି ଆସି ସେ ଆଉ କ୍ଷେତ ବାଡ଼ିରେ କାମ କରିବାକୁ ରାଜି ନୁହେଁ । ତେଣେ କୁଆଡ଼େ ଚାକିରୀ ବାକିରୀ

" ବସୁନ୍ଧରା "



କରିବ, ସେ ଆଶା ବି ନାହିଁ । ତା' ବ୍ୟବହାରରେ କେହି ସନ୍ତୁଷ୍ଟ ନୁହନ୍ତି । କାମ-ଦାମ ମୋଟେ କରିବ ନାହିଁ । କିଏ ତାକୁ ଚାକିରିରେ ରଖିବ ?"

"ଓ, ଏପରି କଥା !" ରାଜା ଟିକିଏ ଭାବିବାର ଅଭିନୟ କରି କହିଲେ, "ସେ ମୋ ସାଙ୍ଗରେ ଚାଲୁ । ରାଜାଙ୍କୁ ଲୁହାଲୁହି କରି ତା' ପାଇଁ କିଛି ଗୋଟାଏ ବ୍ୟବସ୍ଥା କରିଦେବି ।" ରାଜା କହିଲେ ।

ଶେଖର ରାଜାଙ୍କ ସହ ଚାଲିଲା । ସହରକୁ ଯାଉଛି ବୋଲି ତା' ମନ ବଡ଼ ଖୁସି । କିନ୍ତୁ ବାଟରେ ତା' ସହ କଥାବାର୍ତ୍ତା କରୁଁ କରୁଁ ରାଜା ବୁଝିଲେ, ସେ ବଡ଼ ଉଦ୍ଧତ । ତା'ଠୁ କୌଣସି ପ୍ରକାର କାମ ଆଦାୟ କରିବା ମୁସ୍କିଲ୍ ।

ଯାହାହେଉ, ରାଜଧାନୀରେ ପହଞ୍ଚି ରାଜା ତାକୁ ଗୋଟାଏ ଅତିଥିଭବନରେ ଛାଡ଼ି ନଅରକୁ ଗଲେ । ରାଜାଙ୍କର ସ୍ୟମନ୍ତକ ନାମକ ଜଣେ ବରିଷ୍ଠ କର୍ମଚାରୀ ଥିଲେ । ତାଙ୍କର ଗୋଟାଏ ବିଶେଷ ଗୁଣ ହେଲା, ସେ ଲୋକଙ୍କଠାରୁ ଠିକ୍ କାମ ଅସୁଲ୍ କରିପାରୁଥିଲେ । ରାଜା ତାଙ୍କୁ ଡକାଇ ଶେଖର କଥା କହିଲେ । "ସ୍ୟମନ୍ତକଙ୍କୁ ଯଦି ଠିକ୍ ଠିକ୍ କାମରେ ଲଗାଇ ପାରିବ, ତେବେ ତମେ ବାସ୍ତବିକ ଦକ୍ଷ ବୋଲି ଜାଣିବି ।" ରାଜା ଜଣାଇ ଦେଲେ ।

ସ୍ୟମନ୍ତକ ଅତିଥିଭବନକୁ ଯାଇ ଶେଖରକୁ ଭେଟିଲେ ଓ ତାକୁ କେତୋଟି ପ୍ରଶ୍ନ ପଚାରିଲେ । ତା' ଉତ୍ତରରୁ ସେ ବୁଝିଲେ, ତାକୁ ବିଶେଷ କିଛି ଜଣା ନାହିଁ, ଅଥଚ ସବୁ ଜାଣିଛି ବୋଲି ଦେଖାଇ ହେବାକୁ ଇଚ୍ଛା ।

"ବାଃ, ବାଃ, ତମ ଭଳି ଜଣେ ଗୁଣୀ ଯୁବକକୁ ପାଇ ମୁଁ ବେଶ୍ ଆପ୍ୟାୟିତ ।" ଏହା କହି ସେ ତାକୁ ଏପରି ଗୋଟିଏ କାମରେ ରଖାଇଲେ, ଯେଉଁଥିରେ କାମ ଅପେକ୍ଷା ଆରାମ ଓ ଅବସର ବେଶି ।

ଅବସର ପାଇ ଶେଖର ସହରର ଭଲ ଭଲ ବିଭବ ସହିତ ପରିଚିତ ହେଲା ।

ରଙ୍ଗାଳୟ, ସନ୍ତରଣାଗାର, ଘୋଡ଼ଦୌଡ଼, ଏସବୁ ତାଙ୍କୁ ମୁଗ୍ଧ କଲା ।

"ଆଃ, ସହରରେ ଏତେ ମଜା ଅଛି ବୋଲି ମୁଁ ଜାଣି ନଥିଲି ।" ସେ ତା' ସାଥିମାନଙ୍କୁ କହିବାର ସ୍ୟମନ୍ତକ ଶୁଣିଲେ । ସହର ପ୍ରତି ଶେଖରର ଆସକ୍ତି ଜନ୍ମି ଗଲଣି ବୋଲି ସେ ବୁଝିଲେ ।

ପରେ ପରେ ସ୍ୟମନ୍ତକ ତାଙ୍କୁ କିଛି ଜାଠିକର କାମ ଦେଲେ । କିନ୍ତୁ ଶେଖର ମନଦେଇ କାମ କଲା ନାହିଁ । ତା' ଉପରେ ଥିବା ହାକିମ ଆସି ସ୍ୟମନ୍ତକଙ୍କୁ ସେକଥା କହିବାରୁ ସ୍ୟମନ୍ତକ ହାକିମଙ୍କୁ କହିଲେ, "ଦେଖ ବାବୁ, ତମ ଅଧସ୍ତନ କର୍ମଚାରୀଠାରୁ ତମେ ଯଦି କାମ ଆଦାୟ କରି ନ ପାରୁଛ, ତେବେ ଦୋଷ ତମର । ତାଙ୍କୁ କାମ କରାଇ ନ ପାରିଲେ ତା' କାମ ତମକୁ କରିବାକୁ ହେବ । ବୁଝିଲ ?"

"ବାବୁ, ରାଜ୍ୟରେ ଯୋଗ୍ୟ ଯୁବକର ଅଭାବ ନାହିଁ । ଆପଣ କହିଲେ ମୁଁ ଦଶଜଣଙ୍କୁ ଆଣି ଆପଣଙ୍କ ଆଗରେ ହାଜର କରାଇବି । ଆପଣ ଏ ଅଳସୁଆ, ଡଗଲା ଟୋକା ଉପରେ ବୃଥାଟାରେ କାହିଁକି ଏତେ ଗୁରୁତ୍ୱ ଦେଉଛନ୍ତି ?" ହାକିମ ପଚାରିଲେ ।

ସ୍ୟମନ୍ତକ କହିଲେ, "ଅଯୋଗ୍ୟକୁ ଦେଇ କାମ କରାଇନେଲେ ତମର ଯୋଗ୍ୟତା ପ୍ରମାଣିତ ହେବ । ବୁଝିଲ ?"

ହାକିମ ମୁଣ୍ଡ ତଳକୁ କରି ଚାଲିଗଲେ । କିନ୍ତୁ ଶେଖର ଦ୍ୱାରା କିଛି କାମ ହେବ ନାହିଁ





ଜାଣି ସେ ତା' କାମ ନିଜେ କରିବାକୁ ଲାଗିଲେ ।

ଏକଥା ରାଜା ଜାଣି ସ୍ୟମନ୍ତକଙ୍କୁ ଡକାଇ କହିଲେ, "କହୋ, ତମେ ଶେଖର ଦ୍ୱାରା କାମ କରାଇ ପାରିଲ ? ମୋତେ କୌଣସି କୈଫିୟତ ଦେଇ ଲାଭ ନାହିଁ । ତମେ ପାରି ନାହଁ । କ'ଣ କହୁଛ ?"

"ମହାରାଜ, ପାରି ନାହିଁ, ଏକଥା ସତ । କିନ୍ତୁ ପାରିବି ନାହିଁ ବୋଲି କହୁନାହିଁ । ମୋତେ ଆଉ ଟିକିଏ ସମୟ ଦିଅନ୍ତୁ । ବନ୍ଦୀ ଦ୍ୱାରା ମଧ୍ୟ କାମ କରାଇ ନେଇ ହେବ । କିନ୍ତୁ ଯେଉଁ ମୁହୂର୍ତ୍ତରେ ସେ ବନ୍ଦୀଶାଳାରୁ ଯିବ, ସେହି ମୁହୂର୍ତ୍ତରେ କାମ କରିବା ବି ଛାଡ଼ିଦେବ । ଆପଣ ଚାହାନ୍ତି ଶେଖର ଯେପରି ନିଜ ତରଫରୁ କାମରେ ମନ ଦେଉ, ନୁହେଁ ମହାରାଜ ?"

"ହଁ । ଠିକ୍ ।"

"ମୁଁ ସେଇ ବ୍ୟବସ୍ଥା କରୁଛି ।" ଏହା କହି ସ୍ୟମନ୍ତକ ଚାଲିଗଲେ ।

ଆଉ କେଇଦିନ ଗଲା । ସ୍ୟମନ୍ତକ ଶେଖରକୁ ଡକାଇଲେ ଓ ଗମ୍ଭୀର ଭାବରେ କହିଲେ, "କାମଦାମ କିପରି ଚାଲିଛି ?"

"ମୋ ହାକିମ ସହ ମୋର ପଡୁନାହିଁ ।" ଶେଖର କହିଲା ।

"ହୁଁ । ରାଜାଙ୍କୁ କିନ୍ତୁ କୁହାଯାଇଛି ତମେ ଅତ୍ୟନ୍ତ ଅଯୋଗ୍ୟ ଓ ମୂର୍ଖ । ମୁଁ ଜାଣେ ତାହା ସତ ନୁହେଁ । କିନ୍ତୁ କରାଯିବ କ'ଣ ? ରାଜା ତମକୁ ଚାକିରିରୁ ବାହାର କରିଦେବେ ବୋଧହୁଏ ।" ସ୍ୟମନ୍ତକ କହିଲେ ।

ଶେଖର ତମକିପଡି କହିଲା, "କିନ୍ତୁ ଆପଣ ମୋତେ ନିଜେ କୌଣସି କାମ ଦିଅନ୍ତୁ, ଦେଖିବେ ମୁଁ ଠିକ୍ କରୁଛି କି ନାହିଁ !"

"ସେ ଦାୟିତ୍ୱ ମୁଁ କିପରି ନେବି ? ତମେ ଯଦି କାମରେ ଫାଙ୍କିଦେବ, ତେବେ ରାଜାଙ୍କ ଆଗରେ ମୋର ସାମାନ୍ୟ ଯେତିକି ମୂଲ୍ୟ ଅଛି, ସେତିକି ଯିବ ।"

"ଯିବ ନାହିଁ, ଆଜ୍ଞା, ଯିବ ନାହିଁ । ଆପଣ ଥରେ ପରୀକ୍ଷା କରି ଦେଖନ୍ତୁ । ହାକିମଙ୍କୁ ମୋତେ କାମ ଦେବାକୁ ନ କହି ନିଜେ ଦିଅନ୍ତୁ ।" ଶେଖର ଯୋର ଦେଇ କହିଲା ।

"ଆଚ୍ଛା, ସେଇଆ କରିବା ।" ଏହା କହି ସ୍ୟମନ୍ତକ ଅନେକ ଦିନରୁ ବାକି ପଡ଼ିଥିବା ଗୋଟାଏ କାମ ଶେଖରକୁ ଦେଲେ । ସହର-ତଳି ଅଞ୍ଚଳରେ ଜନସୁମାରି କରିବା ଓ ସେଠାକାର ରାସ୍ତାଘାଟ ମାପଚୁପ୍ କରିବା କାମ । ନିଯୁକ୍ତି ଦେଇସାରି ସେ କହିଲେ, "ଯଦି ତମେ ଏ କାମ ସଫଳ ଭାବରେ କରିପାରିବ, ତେବେ ତମ ବିରୁଦ୍ଧରେ ଯେଉଁମାନେ ରାଜାଙ୍କୁ କହିଛନ୍ତି ସେମାନେ ମିଛୁଆ ବୋଲି ଜଣାପଡ଼ିବ । ଫଳରେ ସେମାନଙ୍କୁ ରାଜା ଦଣ୍ଡ ଦେବେ ।"

ଶେଖର ଖୁସି ହୋଇ ଚାଲିଗଲା ।

ଛଅମାସ ପରେ ଦେଖାଗଲା, ଶେଖର ବାସ୍ତବିକ ଭଲ କାମ କରୁଛି । ରାଜା ସ୍ୟମନ୍ତକଙ୍କୁ ବାହାବା ଦେଇ ପଚାରିଲେ, "ତମେ ତାକୁ କିପରି ବାଟକୁ ଆଣିଲ ?"

"ମହାରାଜ! ପ୍ରଥମେ ତାକୁ ଗୋଟାଏ ଆରାମ କଲାଭଳି କାମ ଦେଇ ସହର ପ୍ରତି ତା' ଭିତରେ ପ୍ରବଳ ଅନୁରାଗ ଜନ୍ମାଇଦେଲି । ଚାକିରି ଗଲେ ଏ ସହରରୁ ଚାଲିଯିବାକୁ ପଡ଼ିବ, ଏବଂ ଏଠାରୁ ଗଲେ ସେ ଅସୁଖୀ ହେବ, ଏତିକି ବୁଝିବା ପରେ ତାକୁ ଏପରି ହାକିମ ପାଖରେ ରଖାଇଲି, ଯିଏ କାମ ପାଇଁ ତାକୁ ବାରମ୍ବାର ତାଗିଦା କରିବେ ଓ ଫଳରେ ତାଙ୍କ ସହ ତା'ର ଝଗଡ଼ା ହେବ । ସେତେବେଳେ ତାକୁ ଚାକିରିରୁ ତଡ଼ି ଦେବାର ଭୟ ଦେଖାଇଲେ ସେ ଜିଦି କରି ଭଲ ଭାବରେ କାମ କରିବ ଓ ତା' ପୂର୍ବ ହାକିମ ଯେ ତାକୁ ମିଛରେ ଅଯୋଗ୍ୟ ବୋଲି କହୁଥିଲେ, ଏହା ପ୍ରମାଣ କରିବାକୁ ସେ ତତ୍ପର ହେବ । ଏହି ଧାରଣାରେ ମୁଁ ତା' ପ୍ରତି ଯାହା ଯେପରି କରିବା କଥା କରିଛି ।" ସ୍ୟମନ୍ତକ ବୁଝାଇ କହିଲେ ।

"ବେଶ୍, ବେଶ୍, ତମ ଧାରଣା ଠିକ୍ ବୋଲି ପ୍ରମାଣିତ ହୋଇଛି ।" ରାଜା ସ୍ୟମନ୍ତକଙ୍କୁ ଉତ୍ସାହ ଦେଇ କହିଲେ ।



Anil Kumar Panigrahi

# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଜୁଲାଇ ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ


A. Lakshmana Rao


G. Srinivasa Murthy

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ମେ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ମାର୍ଚ୍ଚ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : କାନ୍ଦନା କୁନି କାନ୍ଦନା !
ଦ୍ୱିତୀୟ ଚିତ୍ର : ସେ ସବୁ ତୋର କୁନା ନନା !!
ପୁରସ୍କାର ବିଜୟୀ : ରମେଶ ଚନ୍ଦ୍ର ମଙ୍ଗରାଜ, ଖୋରଧା
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. କବି ବାଣ ଭଟ୍ଟ; ତାଙ୍କ ବହି ହେଲା 'ହର୍ଷ ଚରିତ' ଏବଂ 'କାଦମ୍ବରୀ'। ୨. ରବର୍ଟ ବ୍ରାଉନିଂ ଏବଂ ଏଲିଜାବେଥ୍ ବାରେଟ୍ ବ୍ରାଉନିଂ। ୩. ଶାର୍ଲୋଟେ ବ୍ରୋଣ୍ଟେ ଏବଂ ଏମିଲି ବ୍ରୋଣ୍ଟେ। ୪. ହାନ୍ସ୍ କ୍ରିଷ୍ଟିଆନ୍ ଆଣ୍ଡରସନ୍। ୫. ୱିଲିଅମ୍ ସେକ୍ସପିଅର୍।






ପିଲାମାନେ !
ଚିହ୍ନୁଛ ମତେ ?
ମୁଁ...ମିକ୍କି ମାଉସ୍ !
ମିଳିମିଶି ମଜା କରିବା,
ବଡ଼ ବଢ଼ିଆ !

ପ୍ରଥମେ, ଗୋଲ୍ଡ ସ୍ପଟ୍ ଠିପି (ନୀଳ ରଙ୍ଗର) ତଳେ ଥିବା ମୋର ୧୪ଟି ଆକୃତି ଭିତରୁ ୧୨ଟି ଖୋଜ ଏକାଠି କର । ସେଗୁଡ଼ିକୁ ଗୋଟିଏ ପ୍ରବେଶ ପତ୍ରରେ ଚପେଇଦିଅ ଓ ସେଇଟିକୁ ଦେଇ ତା' ବଦଳରେ ବଢ଼ିଆ ମଜା ଆଉ ଖେଳ ଥିବା ୱାଲ୍ଟ ଡ଼ିଜ୍‌ନୀ ଆଲବମ୍‌ଟିଏ ନେଇ ଆସ...ବାଃ, କେମିତି ମଜା !

ପ୍ରତି ଦୁଇ ମାସରେ ନୂଆ ଆଲବମ୍‌ଟିଏ ବାହାରୁଛି । ହଁ, ଏବ, ମୋ ପରେ ତମେ ଡୋନାଲ୍ଡ ଡକ୍ ଆଉ ଅଙ୍କା ସ୍କୁଜଙ୍କୁ ମଧ୍ୟ 'ଗୋଡ଼େଇ ଖୋଜିବ'...ତେଣୁ ଏତିକି ବେଳୁ ପ୍ରସ୍ତୁତ ରୁହ !



ତମେ କେମିତି ସଦସ୍ୟ ହେବ ?

ଯେ କୌଣସି ୩ଟି ଆଲବମ୍ ସଂଗ୍ରହ କର । ୩ଟି ଅଲଗା ଅଲଗା ସଦସ୍ୟତା ପତ୍ର ପୂରଣ କର (ପ୍ରତି ଆଲବମରୁ ଗୋଟିଏ ପାଇବ) ଆଉ ତମ ଘର ପାଖରେ ଥିବା ଗୋଲ୍ଡ ସ୍ପଟ୍ ଏକ୍ସଚେଞ୍ଜ ସେଣ୍ଟରକୁ ସେଗୁଡ଼ିକ ଦେଇଦିଅ...ଆଉ ଦେଖୁ ଦେଖୁ ତମେ ମୋ କ୍ଲବ'ର ଜଣେ ସଦସ୍ୟ ହୋଇଯିବ !

ତମକୁ ଗୋଟିଏ ଖାସ୍ ମିକ୍କି ମାଉସ୍ ବ୍ୟାଜ୍ ଆଉ କ୍ଲବ ପରିଚୟ ପତ୍ର ମିଳିବ, ଯାହାକୁ ଦେଖେଇ କରି ତମେ ଖେଳଣା... ବହି...ସିନେମା ସକାଶେ କିଛି ଟଙ୍କା ଛାଡ଼ ପାଇପାରିବ ।

କଅଣ, ଏଥର ମତେ ଗୋଡ଼େଇ ଧରିବା ପାଇଁ ପ୍ରସ୍ତୁତ ତ ତମେ ?

ରେଡୀ ୱାନ...ଟୁ...ଥ୍ରୀ...ଆରମ୍ଭ ଏଥର ଦଉଡ଼ାଦଉଡ଼ି ।



କ'ଣ, ମତେ
ଧରିବାକୁ
ପ୍ରସ୍ତୁତ ତ ତମେ?





# ମିଠା ଆଉ ଲୁଣିଆ-ମିଳନ ଯେତେ ବଢ଼ିଆ !

କେହି ଖାଇ ମିଠା ଲୁହେ
ଆଉ କେହି ଲୁଣି ।
କିନ୍ତୁ କ୍ରାକ୍‌ଜାକ୍, ସ୍ୱାଦେ
ସଭିଙ୍କୁ ନିଏ ଜିଣି ॥

କେବଳ ଏହି ପ୍ୟାକରେ କିଣନ୍ତୁ !
କାରଣ, ଅସଲ କ୍ରାକ୍‌ଜାକ୍ କେବେହେଁ
ଖୋଲା ମିଳେନା । କେବେ ନୁହେଁ ।






**ପାର୍ଲେ କ୍ରାକ୍‌ଜାକ୍ ବିସ୍କୁଟ**

-ଲୁଣି-ମିଠା, ମିଠା-ଲୁଣି, ମୁଖେ ଆଣେ ପାଣି !

everest/84/PP/31-0